ଓଡ଼ିଆ ଗବେଷଣା ପରିଷଦ ଗ୍ରନ୍ଥମାଳା : ୯

କବି ରାମଚନ୍ଦ୍ର ପଟ୍ଟନାୟକଙ୍କ ବିରଚିତ

# ହାରାବଳୀ



କବି ରାମଚନ୍ଦ୍ର ପଟ୍ଟନାୟକ ବିରଚିତ

# ଦ୍ୱାରାବତୀ

ସଂଗ୍ରହ ଓ ସଂପାଦନା :

ଶ୍ରୀ କଣ୍ଠାଧାରୀ ମହାପାତ୍ର




୧୯୮୩

ଓଡ଼ିଆ ଗବେଷଣା ପରିଷଦ
ସାରସ୍ୱତ ନିଳୟ, ଶ୍ରୀଅରବିନ୍ଦ ନଗର
ମଧୁପାଟଣା, କଟକ-୭୫୩ ୦୧୦

# ହାରାବତୀ



ପ୍ରଥମ ପ୍ରକାଶ—୧୯୯୩

ମୁଦ୍ରଣ— ରେନେସାଁ ପ୍ରିଣ୍ଟର୍ସ, ନୂଆବଜାର
କଟକ–୭୫୩୦୦୪

ମୂଲ୍ୟ—ପଚିଶ ଟଙ୍କା ମାତ୍ର

The Institute of Oriya Studies
Publication No. 9

HARAVATI

(A Social Kavya by Ramchandra Pattanayak
of the 18th century A.D.)

Collected & Edited by
Sri Jatadhari Mohapatra, M.A.
At/P O Gediapalli, (Via-Baghamari), Dist. Puri

Published in 1993

Printed at Renaissance Printers
Nayabazar, Cuttack - 753 004

Price : Rupees Twentyfive only

# ସୂଚୀପତ୍ର





## 'ଓଡ଼ିଆ ଗବେଷଣା ପରିଷଦ'ର ଅନ୍ୟାନ୍ୟ ଉଲ୍ଲେଖନୀୟ ପ୍ରକାଶନ

୧ । ଶ୍ରୀଗେଢ଼ା—କବି ବଳରାମ ଦାସ,
ସଂପାଦନା—ଡଃ ମନୀନ୍ଦ୍ର ମହାନ୍ତି, ମୂଲ୍ୟ ଟ ୪-୦୦

୨ । ସର୍ଜନାତ୍ମକ ସାହିତ୍ୟ-ସମୀକ୍ଷା (ଏକ ସଙ୍କଳନ) ମୂଲ୍ୟ ଟ ୧୪-୦୦

୩ । ଓଡ଼ିଆ ଭାଷାଚର୍ଚ୍ଚାର ପରଂପରା—ଡଃ ଗଗନେନ୍ଦ୍ରନାଥ ଦାଶ ମୂଲ୍ୟ ଟ ୨୦-୦୦

୪ । ଆଧୁନିକ ଅବବୋଧ—ଶ୍ରୀ ଗଙ୍ଗାଚରଣ ଦାସ ମୂଲ୍ୟ ଟ ୧୪-୦୦

୫ । ତୁଳନାତ୍ମକ ସାହିତ୍ୟ (ଏକ ସଙ୍କଳନ) ମୂଲ୍ୟ ଟ ୧୫-୦୦

୬ । ରୋମାଣ୍ଟିକ୍ ଅବବୋଧ—ଶ୍ରୀ ଗଙ୍ଗାଚରଣ ଦାସ ମୂଲ୍ୟ ଟ ୨୫-୦୦

୭ । ଶୈଳୀ ବିଜ୍ଞାନ (ଏକ ସଙ୍କଳନ) ମୂଲ୍ୟ ଟ ୧୫-୦୦

୮ । ନନ୍ଦନତତ୍ତ୍ୱ (ଏକ ସଙ୍କଳନ) ମୂଲ୍ୟ ଟ ୨୫-୦୦

୯ । ପରିଷଦର ସମ୍ବିଧାନ—ସଭ୍ୟତାଲିକା—ରଚନାବଳୀ-ପଞ୍ଜିକା
ସଂପାଦନା—ଶ୍ରୀ ସୁଧୀର ଚନ୍ଦ୍ର ବେହୁରା ପ୍ରମୁଖ ମୂଲ୍ୟ ଟ ୫-୦୦

୧୦ । ଏଷଣା ପ୍ରବନ୍ଧାବଳୀ—୧ମ, ୨ୟ, ୩ୟ, ୪ର୍ଥ ଓ ୫ମ ଭାଗ—
ପ୍ରତ୍ୟେକର ମୂଲ୍ୟ ଟ ୨୫-୦୦

୬ଷ୍ଠ, ୭ମ, ୮ମ, ୯ମ ଓ ୧୦ମ ଭାଗ—
ପ୍ରତ୍ୟେକର ମୂଲ୍ୟ ଟ ୩୦-୦୦

୧୧ଶ ଓ ୧୨ଶ ଭାଗ—ପ୍ରତ୍ୟେକର ମୂଲ୍ୟ ଟ ୩୫-୦୦

୧୧ । ଏଷଣା (ପରିଷଦର ଷାଣ୍ମାସିକ ଜର୍ଣ୍ଣାଲ)—ପ୍ରତି ଖଣ୍ଡର ମୂଲ୍ୟ ଟ ୧୨-୦୦

ପ୍ରତ୍ୟେକ ଗବେଷକ, ସାହିତ୍ୟିକ, ସାହିତ୍ୟର ଛାତ୍ରଛାତ୍ରୀଙ୍କ ପକ୍ଷରେ ଅପରିହାର୍ଯ୍ୟ ।

ପ୍ରାପ୍ତିସ୍ଥାନ :

ଓଡ଼ିଆ ଗବେଷଣା ପରିଷଦ କାର୍ଯ୍ୟାଳୟ

ଶ୍ରୀଅରବିନ୍ଦ ନଗର, ମଧୁପାଟଣା, କଟକ ୭୫୩୦୧୦, ଫୋନ୍ : ୩୦୯୬୭ ଓ ୩୩୯୩୨

ଗ୍ରନ୍ଥମନ୍ଦିର—କଟକ-୨, ବ୍ରହ୍ମପୁର-୧ ଫ୍ରେଣ୍ଡସ୍ ପବ୍ଲିସର୍ସ, କଟକ-୨
ପୁସ୍ତକ ଭଣ୍ଡାର—ବ୍ରହ୍ମପୁର-୧, କଟକ-୨ ଶବ୍ଦଲୋକ, ରାଣୀହାଟ, କଟକ-୧

ବର୍ଣ୍ଣଶ୍ରୀ ପ୍ରେସ୍, ଫକୀରମୋହନ ସେନାପତି ରୋଡ୍, ବାଲେଶ୍ୱର-୩

# 'ଓଡ଼ିଆ ଗବେଷଣା ପରିଷଦ' ପକ୍ଷରୁ

ମାନବ-ସଭ୍ୟତା ଇତିହାସରେ ଉତ୍କୃଷ୍ଟ ଗ୍ରନ୍ଥର ଗୁରୁତ୍ୱ ସର୍ବଦା ସ୍ୱୀକୃତ ହୋଇ ଆସିଛି । କେହି କେହି ଏହାକୁ ମଣିଷର 'ଜୀବନ-ବେଦ' କହିଥିଲା ବେଳେ ଆଉ କେହି କେହି କହିଛନ୍ତି—"ଶୋଷିତ ସମାଜର ଅମୋଘ ଅସ୍ତ୍ର" । କିନ୍ତୁ ଉତ୍କୃଷ୍ଟ ଗ୍ରନ୍ଥର ରଚନା ତଥା ପ୍ରକାଶ ପ୍ରାୟ ସର୍ବତ୍ର ସୀମାବଦ୍ଧ । ସେଥିପାଇଁ ବିଭିନ୍ନ ସାଂସ୍କୃତିକ ସଂସ୍ଥା ଓ ସାରସ୍ୱତ ଅନୁଷ୍ଠାନ, ବହୁବିଧ କାର୍ଯ୍ୟକ୍ରମ ମଧ୍ୟରେ ଉତ୍କୃଷ୍ଟ ଗ୍ରନ୍ଥରଚନା ପାଇଁ ଲେଖକମାନଙ୍କୁ ଉତ୍ସାହିତ କରିବା ଏବଂ ସେହିଭଳି ଗ୍ରନ୍ଥର ପ୍ରକାଶନ ଦାୟିତ୍ୱ ବହନ କରିବାର କାର୍ଯ୍ୟକ୍ରମ ଗ୍ରହଣ କରିଥାଆନ୍ତି । 'ଓଡ଼ିଆ ଗବେଷଣା ପରିଷଦ' ମଧ୍ୟ ନିଜର ବିଭିନ୍ନ ଉଦ୍ଦେଶ୍ୟ ମଧ୍ୟରେ 'ପ୍ରକାଶ-ଯୋଗ୍ୟ ନୂତନ / ପୁରାତନ ଓଡ଼ିଆ ଗ୍ରନ୍ଥର ସଂଗ୍ରହ ଓ ମୁଦ୍ରଣ' ଉଦ୍ଦେଶ୍ୟ ସ୍ଥିର କରିଛି ।

ପରିଷଦ ଗ୍ରନ୍ଥମାଳାର ନବମ ପ୍ରକାଶନ ରୂପେ ଏହି ପ୍ରାଚୀନ କାବ୍ୟ 'ଭାଗବତୀ' ଆମେ ଏଥର ସହୃଦୟ ପାଠକ-ସମାଜ ସମକ୍ଷରେ ଉପସ୍ଥାପନ କରୁଛୁ । ବିଭିନ୍ନ ଦିଗରୁ ଏହି କାବ୍ୟଟିର ସ୍ୱାତନ୍ତ୍ର୍ୟ ବା ବିଶେଷତ୍ୱ ରହିଛି, ଯାହାକି ଗ୍ରନ୍ଥ-ସଂପାଦକ ଶ୍ରୀ ମହାପାତ୍ରଙ୍କ ଆଲୋଚନା ତଥା ପରିଷଦର ସଭାପତି ଡକ୍ଟର ବେହେରାଙ୍କ ଅଗ୍ରଲେଖରୁ ସ୍ପଷ୍ଟ ଜଣାପଡ଼େ । ପୂର୍ବରୁ ପରିଷଦର ଜର୍ଣ୍ଣାଲ୍ 'ଏଷଣା'ର ଦ୍ୱାଦଶ ଖଣ୍ଡରେ (ଜୁନ୍ ୧୯୮୬) ଏ କାବ୍ୟର ନିର୍ବାଚିତ ଅଂଶ ଖ୍ୟାତନାମା ଗବେଷକ ପଣ୍ଡିତ ନୀଳମଣି ମିଶ୍ରଙ୍କ ଦ୍ୱାରା ସଂପାଦିତ ହୋଇ ତାଙ୍କରି ସଂକ୍ଷିପ୍ତ ସମୀକ୍ଷା ସହ ପ୍ରକାଶ ପାଇଥିଲା । ତପରେ କାବ୍ୟଟି ପ୍ରତି ସଂସ୍କୃତିପ୍ରେମୀ ସୁଧୀ ମଣ୍ଡଳୀର ଦୃଷ୍ଟି ଆକର୍ଷିତ ହୋଇଥିଲା ଏବଂ ପୂର୍ଣ୍ଣାଙ୍ଗ କାବ୍ୟଟି ଯଥାଶୀଘ୍ର ପ୍ରକାଶ କରିବାପାଇଁ ବହୁ ଅନୁରୋଧ ଓ ତାଗିଦା ଆସିଥିଲା । ପରିଷଦର ସଦସ୍ୟ ଗବେଷକ ଶ୍ରୀ ଜଟାଧାରୀ ମହାପାତ୍ର ବହୁ ପରିଶ୍ରମ କରି ପାଣ୍ଡୁଲିପି-ପୋଥି ସଂଗ୍ରହ ପୂର୍ବକ କାବ୍ୟଟିର ଶୁଦ୍ଧପାଠ ନିର୍ଣ୍ଣୟ ଓ ସଂପାଦନା କରି ଦେଇଛନ୍ତି । ପରିଷଦ ପାଇଁ ତାଙ୍କର ଏ ସକ୍ରିୟ ସହଯୋଗ ଓ ଅନଳସ ଅଧ୍ୟବସାୟ ସ୍ମରଣୀୟ ହୋଇ ରହିବ ।

ପଣ୍ଡିତ ନୀଳମଣି ମିଶ୍ର ପ୍ରଥମେ 'ଭାଗବତୀ'ର ଅଂଶ-ବିଶେଷ ଚୟନ ତଥା କାବ୍ୟ ସମ୍ପର୍କରେ ସଂକ୍ଷିପ୍ତ ଆଲୋଚନା ପୂର୍ବକ ପରିଷଦକୁ ସାହାଯ୍ୟ କରିଥିବାରୁ ଏହି ଅବକାଶରେ ଆମେ ତାଙ୍କୁ ସାଧୁବାଦ ଜଣାଉଛୁଁ । ଭୁବନେଶ୍ୱରସ୍ଥ ରାଜ୍ୟ ଜୟଦେବ ସଂଗ୍ରହାଳୟର କର୍ତ୍ତୃପକ୍ଷ ମଧ୍ୟ ଆମର ବିଶେଷ ଧନ୍ୟବାଦର ପାତ୍ର । କାରଣ ସେମାନେ 'ଭାଗବତୀ'ର ପାଣ୍ଡୁଲିପି ବ୍ୟବହାର ପାଇଁ ସୁଯୋଗ ଦେଇ ନ ଥିଲେ, ଏ ଗ୍ରନ୍ଥ-ପ୍ରକାଶ ସମ୍ଭବ ହୋଇ ନ ଥାନ୍ତା ।

କଟକ ରେନେସାଁ ପ୍ରିଣ୍ଟରସ୍‌ର ସଞ୍ଚାଳକ ଶ୍ରୀ ଶ୍ୟାମସୁନ୍ଦର ଦାଶ ଯତ୍ନ ପୂର୍ବକ ନିର୍ଦ୍ଦିଷ୍ଟ ସମୟ ମଧ୍ୟରେ ଗ୍ରନ୍ଥଟିର ମୁଦ୍ରଣାଦି କାର୍ଯ୍ୟ ସମାହିତ କରିଦେଇ ଥିବାରୁ ଆମର ଧନ୍ୟବାଦାର୍ହ ।

ଆମର ପୂର୍ବ ପ୍ରକାଶିତ ଅନ୍ୟାନ୍ୟ ଗ୍ରନ୍ଥ ଭଳି ଏହି ଗ୍ରନ୍ଥଟି ସଂସ୍କୃତିପ୍ରେମୀ ସୁଧୀ ସଜ୍ଜନମଣ୍ଡଳୀରେ ସାଦର ଗୃହୀତ ହେବ ବୋଲି ବିଶ୍ୱାସ ।

ବିନୀତା

ସାରସ୍ୱତ ନିଳୟ, କଟକ-୧୦
୧ । ୧ । ୧୯୯୩

ଲାବଣ୍ୟ ନାୟକ
ସଂପାଦକ ମଣ୍ଡଳୀ ପକ୍ଷରୁ

# ଅଗ୍ରଲେଖ

## ଡକ୍ଟର କୃଷ୍ଣଚରଣ ବେହେରା

(୧) କବି ରାମଚନ୍ଦ୍ର ପଟ୍ଟନାୟକଙ୍କର 'ହାରାବତୀ' କାବ୍ୟ ଆମର ମଧ୍ୟଯୁଗର ଭଞ୍ଜୀୟ କାବ୍ୟଧାରାର ସଂପୂର୍ଣ୍ଣ ଏକ ବ୍ୟତିକ୍ରମ । କବି ଉପେନ୍ଦ୍ର ଭଞ୍ଜଙ୍କର ସମକାଳରେ ରଚିତ ଦଶଗୋଟି ଛାନ୍ଦ-ବିଶିଷ୍ଟ ଏହି କାବ୍ୟଟିର କେତେକ ଉଲ୍ଲେଖନୀୟ ସ୍ୱାତନ୍ତ୍ର୍ୟ ବା ବୈଶିଷ୍ଟ୍ୟ ରହିଛି, ଯାହାଦ୍ୱାରା କି ଓଡ଼ିଆ ସାହିତ୍ୟ-ଇତିହାସରେ ଏହାର ଏକ ମର୍ଯ୍ୟାଦାବନ୍ତ ଆସନ ନିରୂପିତ ହୋଇପାରେ ।

(୨) ସାମାଜିକ ବିଷୟବସ୍ତୁ-ସମ୍ବଳିତ ଏହା ଏକ ଲୌକିକ, କାଳ୍ପନିକ କାବ୍ୟ । ତତ୍‌କାଳୀନ ଅନ୍ୟାନ୍ୟ କାଳ୍ପନିକ କାବ୍ୟସୁଲଭ ଅଲୌକିକ ବା 'ଅତି-ପ୍ରାକୃତ ଉପାଦାନ ଏଥିରେ ଆଦୌ ନାହିଁ । ଲୌକିକ ବାସ୍ତବ ଜୀବନର ସ୍ୱାଭାବିକ ଚିତ୍ର ପରିବେଷଣରେ 'ହାରାବତୀ' ଆମ ମଧ୍ୟଯୁଗୀୟ ସାହିତ୍ୟରେ ଏକ ଅତୁଳନୀୟ କାବ୍ୟ । ଏହାର ଘଟଣା-ସ୍ଥଳ ପୁଣି କୌଣସି ନଗର, ଦୁର୍ଗ ବା ରାଜଧାନୀ ନୁହେଁ ; ନିପଟ ଗ୍ରାମାଞ୍ଚଳ । ମଫସଲ ପଲ୍ଲୀରେ ଥିବା ପୋଖରୀ-ଆଡ଼ି, ଓଷା-କୋଠି, ହାରାବତୀର ବାପ-ଘର, ଜଣେ ଦୂତୀର ନିର୍ଜନ ନିବାସ, ଫୁଲବଗିଚା ପ୍ରଭୃତି ସ୍ଥାନରେ କାବ୍ୟ-ବର୍ଣ୍ଣିତ ଘଟଣାବଳୀ ସଂଘଟିତ ହୋଇଛି ।

(୩) ଏହାର ମୁଖ୍ୟ ଚରିତ୍ର ବା ନାୟକ-ନାୟିକା ରୂପେ ତତ୍‌କାଳୀନ କାବ୍ୟସୁଲଭ ରଜା-ରାଣୀ, ରାଜପୁତ୍ର-ରାଜକନ୍ୟା, ଗନ୍ଧର୍ବ-ଅପ୍‌ସରା, ବଣିକ-ମନ୍ତ୍ରୀକନ୍ୟା ପ୍ରମୁଖ ଗୃହୀତ ହୋଇନାହାନ୍ତି । ନାମ-କୁଳ ଉଲ୍ଲେଖ ନଥିବା ଜଣେ ଗ୍ରାମୀଣ ଯୁବା, 'ଗୁଡ଼କାର-ବାଳୀ' ହାରାବତୀ, ଗ୍ରାମର ଜଣେ 'ପତି-ରହିତା ନାରୀ' ଦୂତୀ—ଏହି ତିନିଟି ମାତ୍ର ମୁଖ୍ୟ ଚରିତ୍ର (ଏତଦ୍ ବ୍ୟତୀତ କାବ୍ୟଟିର ଆଉ ତିନି ଚାରିଟି ଚରିତ୍ର ଗୌଣାତିଗୌଣ) 'ସାଧାରଣ ଲୌକିକ ସ୍ତରସ୍ଥ

ଗୃହୀତ ହୋଇଛନ୍ତି । ସମଗ୍ର ପ୍ରାଚୀନ ଓଡ଼ିଆ ସାହିତ୍ୟରେ 'ହାଗବତୀ' ବୋଧହୁଏ ଏକମାତ୍ର ଛାନ୍ଦକାବ୍ୟ, ଯେଉଁଥିରେ ସାଧାରଣ ଇତର ଜୀବନରୁ ସକଳ ଚରିତ୍ର ଚୟନ କରଯାଇଛି । ପ୍ରାୟ ପାଞ୍ଚଶହ ବର୍ଷର ପ୍ରାଚୀନ କାବ୍ୟ-କବିତାରେ ସାଧାରଣ ଇତର ବର୍ଗର ଜୀବନାଲେଖ୍ୟ କାହିଁ ? କବି ଉପେନ୍ଦ୍ର ଭଞ୍ଜ, ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମା ପ୍ରମୁଖଙ୍କ ରଚନାବଳୀରେ ଯାହା ଯେଉଁଠି ରହିଛି, ତାହା ରହିଛି ଅସଲ କଥାର 'ନଥା' ଭାବରେ କିମ୍ବା ମୂଳ ଲକ୍ଷ୍ୟର ଉପଲକ୍ଷ୍ୟ ଭାବରେ । ସାମନ୍ତ ଶ୍ରେଣୀ ବା ତଥାକଥିତ ଉଚ୍ଚ ବର୍ଗୀୟ ଚରିତ୍ର ସମୂହର ଅନୁଚର, ଦାସଦାସୀ ଇତ୍ୟାଦି ରୂପେ ସେହି ଇତର ବର୍ଗର ଜୀବନାଲେଖ୍ୟ ପ୍ରସଙ୍ଗ କ୍ରମେ ସୂଚିତ ହୋଇଛି ମାତ୍ର । ଏହି ଦୃଷ୍ଟିରୁ 'ହାଗବତୀ'ର ଚରିତ୍ରାୟନ ଅନନ୍ୟ ଓ ଅଭୂତପୂର୍ବ ।

ବୈଷ୍ଣବମାନେ ତଥା ଆଉ ଆଉ ସାଧୁସନ୍ଥ ସମୂହ ସେତେବେଳେ ସଂକୀର୍ଣ୍ଣ ଜାତିଆଣା ଭେଦ ମାନୁ ନ ଥିଲେ ଏବଂ ତାହାର କ୍ଷତିକାରୀ ଦିଗ ସଂପର୍କରେ ପ୍ରବଚନ-ଅନୁଶାସନ ଆଦି ପ୍ରସାର କରଇଥିଲେ । ତଥାପି ଜାତିଭେଦର ଜୀବାଣୁ ଆମର ତତ୍କାଳୀନ ଜାତୀୟ ଜୀବନକୁ ବ୍ୟାଧିଗ୍ରସ୍ତ କରି ପକାଇଥିଲା । ଉଚ୍ଚ ବର୍ଣ୍ଣର ଲୋକେ ବୈଷୟିକ ତଥା ସାଂସ୍କୃତିକ କ୍ଷେତ୍ରରେ ପ୍ରାୟ ସକଳ ପ୍ରକାର ସୁବିଧା ସୁଯୋଗ ପାଇ ପାରୁଥିଲେ । ଇତର ଜାତିର ଲୋକେ ସବୁଥିରୁ ପ୍ରାୟ ବଞ୍ଚିତ ହୋଇ ରହିଥିଲେ । ସେହି ପରିସ୍ଥିତିରେ ସାହିତ୍ୟ ଥିଲା ମୁଖ୍ୟତଃ ଗଗନବିହାରୀ, ନୋହିଲେ ନଗରବିହାରୀ । ପ୍ରକୃତ ମାଟି ଓ ମଣିଷର କଥା ତାହା ପ୍ରାୟ କହୁ ନ ଥିଲା । ତେଣୁ ସେତେବେଳର କାବ୍ୟ କବିତାରେ ସାଧାରଣ ଇତର ବର୍ଗର ଜୀବନାଲେଖ୍ୟ ଖୋଜିଲେ ମିଳିବ କାହୁଁ ? 'ହାଗବତୀ' କିନ୍ତୁ ଆମର ସେହି ମାଟି ଓ ସାଧାରଣ ଇତର ଜନଙ୍କ କଥା କହିଛି—କହିଛି ପୁଣି 'ଯୁବାଜନ' 'ରସିକ ନାଗର'ଙ୍କ ଉଦ୍ଦେଶ୍ୟରେ । କବି ରାମଚନ୍ଦ୍ର ପଟ୍ଟନାୟକଙ୍କର ସାଧାରଣ ଶଗଡ଼-ଗୁଳାରୁ ବାଟ ଭାଙ୍ଗି ଆସିବାର ଏ ଦୁଃସାହସ ଏକାନ୍ତ ଅଭିନବ । ତାଙ୍କୁ ଆଧୁନିକ ଅର୍ଥରେ 'ସମାଜସଚେତନ' କବି ବୋଲଯାଇ ପାରେ ।

(୪) କବିଙ୍କର ଦୁଃସାହସ ଆଉ ଗୋଟିଏ କ୍ଷେତ୍ରରେ ପ୍ରକଟିତ ହୋଇଥିବା ଉଲ୍ଲେଖଯୋଗ୍ୟ ବିଷୟ । କାବ୍ୟଟିର ପାରଦାରିକ ପ୍ରାକୃତ ପ୍ରଣୟ-ଚିତ୍ର

ବେଶ୍ ଉଜ୍ଜ୍ୱଳ । ଅନ୍ୟ ଜଣଙ୍କୁ ବିବାହ କରି ସାରିଛି ପରେ ମଧ୍ୟ ଲୀଲାବତୀ ଏବଂ ତାହାର କିଶୋରୀଜୀବନର ସାଥୀ ଯୁବା ପୁରୁଷର ଘନିଷ୍ଠ ସଂପର୍କ (ଯୁବା-ବିବାହ କରିଥିବାର ଉଲ୍ଲେଖ ନାହିଁ) ଏଥିରେ ବିସ୍ତୃତ ଭାବେ ବର୍ଣ୍ଣିତ ହୋଇଛି । ଏହି ପାରଦାରିକ ସଂପର୍କ ଅସାମାଜିକ ଓ ନିନ୍ଦନୀୟ ହେଲେହେଁ, ଅବାସ୍ତବ ବା ଅପ୍ରାକୃତ ନୁହେଁ । ସମାଜରେ ଏହାର ଉଦାହରଣର ଅଭାବ ନାହିଁ । ମହର୍ଷି ମଲ୍ଲନାଗ ବାତ୍ସ୍ୟାୟନ (ଖ୍ରୀଷ୍ଟୀୟ ୪ର୍ଥ ଶତାବ୍ଦୀର ପୂର୍ବେ) ଆପଣା 'କାମସୂତ୍ର' ଗ୍ରନ୍ଥର ପଞ୍ଚମ ଅଧିକରଣରେ --

× × ଧର୍ମାର୍ଥୟୋଶ୍ଚ ବୈଲୋମ୍ୟାନ୍ନାଚରେତ୍ ପାରଦାରିକମ୍ ॥ ୪।୭।୬.

× × ପ୍ରଜାନାଂ ଦୂଷଣାୟୈବ ନ ବିଜ୍ଞେୟୋଽସ୍ୟ ସବିଧିଃ ॥ ୪।୮।୬

ଇତ୍ୟାଦି କହି ପାରଦାରିକ ସଂପର୍କକୁ ନିନ୍ଦା କରିଥିଲେହେଁ ଏହାର ଉପଯୋଗିତା ସୂଚାଇଛନ୍ତି ଏବଂ ଛଅଟି ଅଧ୍ୟାୟରେ ଏହାର ବିସ୍ତୃତ ବିବରଣୀ ପ୍ରଦାନ କରିଛନ୍ତି । ତେଣୁ ଏହା ଉପେକ୍ଷାର ବିଷୟ ନୁହେଁ । କବି ରାମଚନ୍ଦ୍ର ପଟ୍ଟନାୟକ ମାନବୀୟ ପ୍ରୀତିର ସେହି ଦିଗଟି ସାହସର ସହିତ ଚିତ୍ରଣ କରିଛନ୍ତି—ପ୍ରାକୃତ ପାରଦାରିକ ପ୍ରଣୟ ଉପରେ ଅଯଥା ତୁଳସୀପତ୍ର ଚଢ଼ାଇବାକୁ ହୁଏତ ଉଚିତ ମନେ କରି ନାହାନ୍ତି ।

ପ୍ରସଙ୍ଗ କ୍ରମେ ଏଠାରେ ଏହା ଉଲ୍ଲେଖନୀୟ ଯେ—ପାରଦାରିକତା ହେଉ ବା ସ୍ୱାଦାରିକତା ହେଉ, ପୂର୍ବରୁ ସାହିତ୍ୟରେ ସମସ୍ତ ପ୍ରେମ-ପ୍ରଣୟର ଚିତ୍ର ଦେବଦେବୀଙ୍କ ନାମରେ ଅଥବା ଧର୍ମସଂପ୍ରଦାୟର ଧ୍ୱଜା ତଳେ ବେଶ୍ ଚଳି ଯାଉଥିଲା । ସ୍ୱକୀୟା ବା ପରକୀୟା ସଂପର୍କର ବର୍ଣ୍ଣନା ଉପରେ ତୁଳସୀ ପତ୍ରଟାଏ ପକାଇଦେଲେ, ସମସ୍ତଙ୍କର ଗ୍ରହଣଯୋଗ୍ୟ ହୋଇ ଯାଉଥିଲା । ମାତ୍ର ସାଧାରଣ ନରନାରୀଙ୍କ ପ୍ରାକୃତ ପ୍ରେମ-ପ୍ରଣୟର ବର୍ଣ୍ଣନା—ତାହା ସ୍ୱାଦାରିକ ହେଉ ବା ପାରଦାରିକ ହେଉ—ଅନେକେ ସ୍ୱଚ୍ଛନ୍ଦରେ ଗ୍ରହଣ କରି ପାରୁ ନ ଥିଲେ । ପ୍ରେମ-ପ୍ରଣୟାଦି ଚିତ୍ରଣରେ ସେତେବେଳେ କବିମାନେ ଦେବତାଙ୍କୁ ମଣିଷ-ସ୍ତରକୁ ଖସାଇ ଆଣୁଥିଲେ ସିନା, ମଣିଷକୁ ଦେବତା ସ୍ତରକୁ ଉଠାଇବା ପାଇଁ ସ୍ପୃହଣୀୟ ମନେ କରୁ ନ ଥିଲେ । କବିସୂର୍ଯ୍ୟ ବଳଦେବ, ଗୋପାଳକୃଷ୍ଣ, ବନମାଳୀ ପ୍ରମୁଖଙ୍କର ଧର୍ମନିରପେକ୍ଷ ଚଉପଦୀ ସମୂହକୁ 'ଗ୍ରାମ୍ୟ ରସର ଗୀତ' ଅଭିଧାରେ ଚିହ୍ନିତ କରିବା ମୂଳରେ ଏହି ମନୋବୃତ୍ତି ନିହିତ । 'ଗ୍ରାମ୍ୟ ରସ'

କଥାଟି ସାଧାରଣତଃ ଗୁଣାପକର୍ଷକ ବା ଅବମାନନାସୂଚକ ; ଏହାର ପ୍ରୟୋଗରେ ସାଧାରଣ ଲୌକିକ ଓ ପ୍ରାକୃତ ପ୍ରେମ-ବର୍ଣ୍ଣନାକୁ ଅପ୍ରାକୃତ ପ୍ରେମ-ବର୍ଣ୍ଣନାଠାରୁ ନ୍ୟୂନ ମନେ କରଯାଇଛି । ଏ ସଂପର୍କରେ କଟକ ଫ୍ରେଣ୍ଡସ୍ ପବ୍ଲିଶର୍ସ କର୍ତ୍ତୃକ ପ୍ରକାଶିତ ଏହି ଲେଖକର 'ଗୋପାଳକୃଷ୍ଣ ପଦାବଳୀ ପରିକ୍ରମା' (୧୯୮୫) ଗ୍ରନ୍ଥର ଆଲୋଚନା (ପୃଷ୍ଠା ୪୯—୫୨) ଦ୍ରଷ୍ଟବ୍ୟ ।

(୫) ମଧ୍ୟଯୁଗରେ ବହୁ ଚର୍ଚ୍ଚିତ ଅଳଙ୍କାରିକ କ୍ଲିଷ୍ଟ ଶୈଳୀର ଅନ୍ୟ ଏକ ପାର୍ଶ୍ୱରେ 'ଭାଗବତୀ' କାବ୍ୟର ସରଳ ସାବଲୀଳ ସାଙ୍ଗୀତିକ ଶୈଳୀ ଦଣ୍ଡାୟମାନ । ଅଷ୍ଟାଦଶ ଶତାବ୍ଦୀ ପୂର୍ବରୁ ଆମ ସାହିତ୍ୟରେ ସକଳ ପ୍ରକାର ଛାନ୍ଦକାବ୍ୟର ଏହି ଶୈଳୀ ପ୍ରବର୍ତ୍ତିତ ହୋଇଥିଲା ଏବଂ ପ୍ରାୟ ଊନବିଂଶ ଶତାବ୍ଦୀ ଶେଷଯାଏଁ ଅବ୍ୟାହତ ଥିଲା । ଏହାହିଁ ବୋଧହୁଏ ଥିଲା ସେତେବେଳେ କାବ୍ୟ-ରଚନା ଶୈଳୀର ମୁଖ୍ୟ ଧାରା । କିନ୍ତୁ ଅତ୍ୟନ୍ତ ଦୁଃଖର କଥା, ଆମର ସାହିତ୍ୟ-ସମୀକ୍ଷା କ୍ଷେତ୍ରରେ ତଥା ସାହିତ୍ୟ-ଇତିହାସ ଗ୍ରନ୍ଥମାନଙ୍କରେ ଆଙ୍ଗିକ-ପ୍ରଧାନ କ୍ଲିଷ୍ଟ ଆଳଙ୍କାରିକ ଶୈଳୀର କାବ୍ୟଗୁଡ଼ିକ ଯେପରି ଗୁରୁତ୍ୱ, ସମ୍ମାନ ଓ ଗୁଞ୍ଜରଣ ସହ ଆଲୋଚିତ ହୋଇଛନ୍ତି ବା ହେଉଛନ୍ତି, ଏହି ସରଳ ଅନାଳଙ୍କାରିକ ଶୈଳୀର କାବ୍ୟଗୁଡ଼ିକ ସେପରି ଆଲୋଚିତ ହେଉ ନାହାନ୍ତି । ଏହା ଦ୍ୱାରା ଆମ ସାହିତ୍ୟାଲୋଚନାର ସମତୁଲ, ବସ୍ତୁନିଷ୍ଠ ଓ ବିଶ୍ରମ୍ଭସିଦ୍ଧ ଦୃଷ୍ଟିକୋଣ ପ୍ରକଟିତ ହେଉଛି ବୋଲି କହି ହେବ ନାହିଁ । ଏଠାରେ ସଂସ୍କୃତିପ୍ରେମୀ ସୁଧୀମଣ୍ଡଳୀଙ୍କ ସମକ୍ଷରେ ଏହି ସମାନ୍ତରାଳ ଦୁଇଟି କାବ୍ୟଧାରାର ମୋଟାମୋଟି ଏକ ତାଲିକା ଉପସ୍ଥାପନ କରଯାଉଛି ।

### (କ) ସରଳ ଅନାଳଙ୍କାରିକ ଶୈଳୀର କାବ୍ୟ

୧ । କବି ଅର୍ଜ୍ଜୁନ ଦାସ (୧୬ଶ ଶତାବ୍ଦୀ)— ରାମବିଭା ଓ କଳ୍ପଲତା
୨ । ନରସିଂହ ସେଣ ମହାପାତ୍ର (୧୬ଶ) — ପରିମଳା
୩ । ଶିଶୁ ଶଙ୍କର ଦାସ (୧୬ଶ ଶେଷ ଭାଗ)— ଉଷାଭିଳାଷ
୪ । କାର୍ତ୍ତିକ ଦାସ (୧୬ଶ ଶେଷ ଭାଗ)— ରୁକ୍ମିଣୀ ବିଭା
୫ । ଦେବ ଦୁର୍ଲ୍ଲଭ ଦାସ (୧୬ଶ ଶେଷ ଭାଗ) — ରହସ୍ୟମଞ୍ଜରୀ
୬ । ପ୍ରତାପ ରାୟ (୧୭ଶ ଶତାବ୍ଦୀ)—ଶଶୀସେଣା

୭ । ଦୀନକୃଷ୍ଣ ଦାସ (୧୭ଶ)—ରସକଲ୍ଲୋଳ
୮ । ପୁରୁଷୋତ୍ତମ ଦାସ (୧୭ଶ)—କାଞ୍ଚିକାବେରୀ
୯ । ବନମାଳୀ ଦାସ (୧୭ଶ)—ଗୁପ୍ତ ଇଚ୍ଛାବତୀ
୧୦ । ଭୂପତି ପଣ୍ଡିତ (୧୮ଶ ଶତାବ୍ଦୀ)—ପ୍ରେମ ପଞ୍ଚାମୃତ
୧୧ । ରାମଚନ୍ଦ୍ର ପଟ୍ଟନାୟକ (୧୮ଶ)—ହାରାବତୀ ଓ ଅନୁରାଗବତୀ
୧୨ । କ୍ଷିତିବଂଶୀ ଈଶ୍ୱର ଦାସ (୧୮ଶ)—ଶ୍ରୀଚୈତନ୍ୟ ଭାଗବତ
୧୩ । ବିଶ୍ୱନାଥ ଖୁଣ୍ଟିଆ (୧୮ଶ)—ବିଚିତ୍ର ରାମାୟଣ
୧୪ । ଭୀମା ଧୀବର (୧୮ଶ ଶେଷ ଭାଗ)—କପଟପାଶା
୧୫ । ଭକ୍ତଚରଣ ଦାସ (୧୮ଶ ଶେଷ ଭାଗ)—ମଥୁରାମଙ୍ଗଳ, ଇତ୍ୟାଦି ।

ଏହା ବ୍ୟତୀତ ଏହି ଶୈଳୀରେ ରଚିତ ବହୁ ଚଉତିଶା, ଚଉପଦୀ, ଭଜନ, ଜଣାଣ ଆଦି ଆମ ପ୍ରାଚୀନ ସାହିତ୍ୟ-ଭଣ୍ଡାରକୁ ସମୃଦ୍ଧ କରିଛି । ଅନ୍ୟ ପକ୍ଷରେ—

(ଖ) ଆଳଙ୍କାରିକ କ୍ଳିଷ୍ଟ ଶୈଳୀର କାବ୍ୟ

୧ । କବି ଧନଞ୍ଜୟ ଭଞ୍ଜ (୧୭ଶ ଶତାବ୍ଦୀ)—ଅନଙ୍ଗରେଖା, ଇଚ୍ଛାବତୀ, ରଘୁନାଥ ବିଳାସ ପ୍ରଭୃତି
୨ । ବିଷ୍ଣୁ ଦାସ (୧୭ଶ)—ପ୍ରେମଲୋଚନା
୩ । ବୃନ୍ଦାବତୀ ଦାସୀ (୧୭ଶ ଶେଷ ଭାଗ)—ପୂର୍ଣ୍ଣତମ ଚନ୍ଦ୍ରୋଦୟ
୪ । ଉପେନ୍ଦ୍ର ଭଞ୍ଜ (୧୮ଶ)—ଲାବଣ୍ୟବତୀ, କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ, ରସିକ ହାରାବଳୀ, ସୁଭଦ୍ରା ପରିଣୟ, ବୈଦେହୀଶ ବିଳାସ ପ୍ରଭୃତି
୫ । ଲୋକନାଥ ବିଦ୍ୟାଧର (୧୮ଶ)—ଚିତ୍ରକଳା, ସର୍ବାଙ୍ଗସୁନ୍ଦରୀ ପ୍ରଭୃତି
୬ । ବ୍ରଜନାଥ ବଡ଼ଜେନା (୧୮ଶ)—ଶ୍ୟାମରାସୋତ୍ସବ, ବିଚକ୍ଷଣା, କେଳି କଳାନିଧି ଆଦି
୭ । ଅଭିମନ୍ୟୁ ସାମନ୍ତସିଂହାର (୧୮ଶ ଶେଷ ଭାଗ)—ବିଦଗ୍ଧ ଚିନ୍ତାମଣି, ସୁଲକ୍ଷଣା ଆଦି
୮ । ଯଦୁମଣି ମହାପାତ୍ର (୧୯ଶ ପ୍ରଥମ ଭାଗ)—ପ୍ରବନ୍ଧ ପୂର୍ଣ୍ଣଚନ୍ଦ୍ର ଓ ରାଘବ ବିଳାସ, ଇତ୍ୟାଦି ।

ଏହି ଶୈଳୀରେ ରଚିତ କିଛି ଚଉତିଶା, ଚଉପଦୀ, ଜଣାଣ ଆଦି ଥିଲେହେଁ ତାହାର ପରିମାଣ ବେଶି ନୁହେଁ । ଏ ଦୁଇଟି ତାଲିକାରୁ ସ୍ପଷ୍ଟ ଜଣାଯାଉଛି

ଯେ—ପ୍ରଥମ (କ) କାବ୍ୟଶୈଳୀଟି ଥିଲା ପ୍ରାଚୀନ ଓଡ଼ିଆ ସାହିତ୍ୟର ମୁଖ୍ୟ ଧାରା । ଏହି ଧାରା ମୂଳରେ ସଂସ୍କୃତ କବି ମାଘ ବା ଶ୍ରୀହର୍ଷ ନାହାନ୍ତି । ଏହି କାବ୍ୟକୃତି ସମୂହରେ ବିଭିନ୍ନ ଅଳଙ୍କାରର ଆଲୁଳାୟିତ ଆଲେଖ୍ୟ ନାହିଁ—ନାହିଁ ମଧ୍ୟ ଭାଷାର ଭେଲ୍‌କିବାଜି । ସରଳ ସାବଲୀଳ ଭଙ୍ଗୀରେ ସରସ କବିତ୍ୱ ଏଥିରେ ବିଳସିତ ହେଉଥିବାର ଯେ କୌଣସି ପାଠକ ଲକ୍ଷ୍ୟ କରି ପାରିବେ । ଏହି କାବ୍ୟଧାରାକୁ ଉପଯୁକ୍ତ ଧ୍ୟାନ ଓ ଗୁରୁତ୍ୱ ସହ ବିଚାର-ଆଲୋଚନା କରିବା ପାଇଁ ଆମର ବିଜ୍ଞ ଗବେଷକ ଓ ସମାଲୋଚକମାନଙ୍କୁ ନିବେଦନ କରୁଛି ।

(୬) 'ହାରାବତୀ' କାବ୍ୟ ପ୍ରତି ସ୍ୱର୍ଗତ ଅଧ୍ୟାପକ ଆର୍ତ୍ତବଲ୍ଲଭ ମହାନ୍ତି ପ୍ରଥମେ ଆମର ଦୃଷ୍ଟି ଆକର୍ଷଣ କରିଥିଲେ । ପରେ ପଣ୍ଡିତ ନୀଳମଣି ମିଶ୍ର, ପ୍ରଫେସର୍ ସୁଦର୍ଶନ ଆଚାର୍ଯ୍ୟ ପ୍ରମୁଖ ଏହାର ବୈଶିଷ୍ଟ୍ୟ ସମ୍ପର୍କରେ ମନ୍ତବ୍ୟ ପ୍ରକାଶ କରିଥିଲେ । କାବ୍ୟଟି କିନ୍ତୁ ଅପ୍ରକାଶିତ ଥିଲା । 'ଓଡ଼ିଆ ଗବେଷଣା ପରିଷଦ'ର ମୁଖପତ୍ର 'ଏଷଣା'ର ଦ୍ୱାଦଶ ଖଣ୍ଡରେ (ଜୁନ୍—୧୯୮୬) ଏହାର ନିର୍ବାଚିତ ଅଂଶବିଶେଷ ପଣ୍ଡିତ ନୀଳମଣି ମିଶ୍ରଙ୍କ ଦ୍ୱାରା ସମ୍ପାଦିତ ହୋଇ ପ୍ରକାଶ ପାଇଥିଲା । ଏବେ ସମ୍ପୂର୍ଣ୍ଣ କାବ୍ୟଟି ଶ୍ରୀ ଜଟାଧାରୀ ମହାପାତ୍ରଙ୍କ ଦ୍ୱାରା ସମ୍ପାଦିତ ଓ ଆଲୋଚିତ ହୋଇ ପରିଷଦ ପକ୍ଷରୁ ପ୍ରକାଶ କରାଯାଉଛି । ଏହା ବିଦଗ୍ଧ ପାଠକ-ସମାଜ ଦ୍ୱାରା ସାଦର ଗୃହୀତ ହେବ ବୋଲି ବିଶ୍ୱାସ ।



# ପ୍ରଥମ ଛାନ୍ଦ

(ରାଗ : ଗୁର୍ଜ୍ଜରୀ*)

ଚିନ୍ତି ଚିତ୍ତେ ଦୁର୍ଗାଦେବୀ ଚରଣ ସାରସ,
କହୁଅଛି ଯୁବାଜନେ ଶୁଣ ଏହୁ ରସ ଯେ[୧] ।୧।

ଭାଦ୍ରବ ମାସରେ ରବିବାରମାନଙ୍କରେ,
ଏକ ଓଷା ହୋଏ ହେତୁ[୨] ପ୍ରସିଦ୍ଧ ଲୋକରେ ଯେ ।୨।

ଅବିଭାଇ[୩] କୁମାରୀଏ ଆଚରନ୍ତି ତାହା,
ପ୍ରଭାତୁ ସେଦିନ ହୋଇ ଅତ୍ୟନ୍ତ ଉଛାହା ହେ[୪] ।୩।

ମେଳ ହୋଇ[୫] ବନକୁ ଗମନ୍ତି ଫୁଲ ତୋଳି,
ଯେକେ ଯେକେ ପରିହାସ କଥାମାନ ଛଳି ଯେ[୬] ।୪।

କାନନ ଭ୍ରମିଣ ବହୁ କୁସୁମ ତୋଳିଲେ,
ପୁଣି ଏକ ସରୋବର ତଟରେ ମିଳିଲେ ଯେ ।୫।

ଦେଖିଲେ ଫୁଟିଛି ତହିଁ କୁସୁମ ସାରସ,
କୁମାରୀଏ ଦେଖି ହେଲେ ଅତ୍ୟନ୍ତ ହରଷ ହେ[୭] ।୬।

ତହିଁ ଅତି ଶୋଭା ଅଟେ[୮] ଗୁଡ଼କାର[୯] ବାଳୀ,
ତାରଗଣ ମଧ୍ୟରେ କି ଚନ୍ଦ୍ର କରେ କେଳି ଯେ ।୭।

କାମ ଦେଖି ମୋହିହେବ ନାମ ତାର ହାରା,
ଯୁବାଜନ ମାନସ ନୟନ ବନ୍ଦୀ କାରା ଯେ ।୮।

---

* 'କ'-ପୋଥିରେ ରାଗ ସଂପର୍କିତ ନିର୍ଦ୍ଦେଶ ନାହିଁ, 'ଗ' ଓ 'ଘ' ପୋଥିରେ ଏହି ଅଂଶ ନଷ୍ଟ ହୋଇଯାଇଛି । 'ଗ', 'ଘ'—ରାଗ—× × × । ତେଣୁ ଏହି ରାଗ ନିର୍ଦ୍ଦେଶ 'ଖ' ପୋଥିରୁ ଗ୍ରହଣ କରାଯାଇଛି ।

୧—'ଗ', 'ଘ'—ହେ; ୨—'ଘ'—ଏହୁ; ୩—'ଖ'—ଅବିବାହୀ; ୪—'ଖ'—ଉତ୍ସାହା ଯେ; ୫—'କ'—ହୋଇଣ; ୬—'ଘ'—୪ ଓ ୫ ପଦ ପରସ୍ପର ପରସ୍ପରର ପରିବର୍ତ୍ତେ ରହିଛି; ୭—'ଖ'—ଯେ; ୮—'ଖ'—ଦିଶେ; ୯-'କ', 'ଖ'—ଗୁଡ଼ାକର;

ପରବେଶ ହୋଇଅଛି ଦ୍ୱାଦଶ[10] ବରଷ,
ଯବା ନୋହି ଯୁବା ରୂପ ବଚନ ସାରସ[11] ଯେ ।୯।

ଉରେ ତାର ଅଙ୍କୁରିଛି ଅଳପ ଉରଜ,
ମଦନ କି[12] ଉଆଁଇଛି ଶିବଜୟ ସଜ ହେ[13] ।୧୦।

ଯହିଂ ବଳେ ବଚନ୍ତୁ ତା ନୟନ[14] ଚତୁରୀ,
ଲୋକନରେ ଯୁବାହୃଦ ପକାଏ କତୁରି ଯେ ।୧୧।

ଉଭା ହେଲେ ଶୋଭା ଦିଶୁଥାଇ ଶଶାଙ୍କର[15],
ଗମନରେ ମଣ୍ଡଥାଇ ଧରଣୀ ନିକର ଯେ ।୧୨।

ଅନଙ୍ଗ ମୋହୋନ[16] ଶର[17] ପରାୟେ ସୁନ୍ଦର,
ଅନାଇଲେ ରସେ ମୋହହେବ ପୁରନ୍ଦର ଯେ ।୧୩।

ଏମନ୍ତ[18] ଚତୁରୀ ସଖୀ ସଙ୍ଗେ ସଙ୍ଗ ହୋଇ,
ମଣ୍ଡି ସରୋବର ତଟେ ଜଳକୁ ଅନାଇଂ ଯେ ।୧୪।

କୁମୁଦ କମଳ ତୋଳିବାକୁ ଶ୍ରଦ୍ଧା[19] କରି,
ସରୋବରେ[20] ପଶିଲା ସେ ସାଧୁତ କୁମାରୀ ଯେ ।୧୫।

ଜଳ ବହୁଳଷ୍ଟୁ କରି ସ୍ଥଳ ନ ପାଇଲା,
ଚଞ୍ଚଳ ନୟନେ ଚଉଦିଗକୁ ଗ୍ରହିଂଲା ଯେ ।୧୬।

ଏ ସମୟେ ଏକ ଯୁବା ଅବଗାହ ପାଇଂ,
ସେ ସରସୀ କୂଳରେ ପ୍ରବେଶ ହେଲା ଯାଇ ଯେ ।୧୭।

ଦେଖିଲା ସେ ବାଳିକାକୁ ସଖୀଙ୍କ ସଙ୍ଗରେ,
ଜଳେ ପଶିଅଛି ସେ କୁସୁମ ଲାଳସରେ[21] ଯେ ।୧୮।

---

୧୦-'ଗ'—ସହଜେ ହୋଇଛି ତା'କୁ; ୧୧-'ଘ'—ଯୁବାରୁ ତା ବଦ×ସରସ; ୧୨—'ଘ'-ମେଦିନୀ କି; ୧୩—'ଖ'—ଯେ; ୧୪-'ଗ'—କହିବ କେ ବଚନେ ତା; 'ଘ'—ପାଦଟି ନଷ୍ଟ; ୧୫—'ଘ'-ରସା ଶିର, 'ଗ'-ପାଦଟି ନଷ୍ଟ; ୧୬-'ଖ'-ମୋହନ; ୧୭-'ଖ'-ଦାସ; ୧୮-'ଖ'-ଏମନ୍ତେ; —୧୯-'ଘ'-ସାଧ; ୨୦-'କ'-ସରବରେ, 'ଖ'-ରସେ ସରେ। ୨୧-'ଖ' ଲାଳସାରେ ।

ପୂର୍ବରୁ ସେ ରସିକ ତାହାକୁ ଦେଖିଥାଇ,
ତାହା ସଙ୍ଗେ ପ୍ରୀତି[୨୨] କରିବାକୁ ଇଛିଥାଇ[୨୩] ଯେ ।୧୯।

ଅନୁଅରି ବଚନେ[୨୪] କହିଲେ କହେ କଥା,
ଲଜ ବଶେ ନ ଗ୍ରହେଁ ଗ୍ରହିଁଲେ ପୋତେ ମଥା ଯେ ।୨୦।

ଏହି ଟାକୁ ଜାଣନ୍ତି ସେ ଜାଣଇ ଏହାକୁ[୨୫]
ସେ ନ ଇଛେ ଯୁବା ଇଛୁଥାଇ ତା ସଙ୍ଗକୁ ଯେ ।୨୧।

ରତି ନ ଜାଣିମାରୁ ଭରସା ନ କରଇ,
ଲୋଭ ଉତ୍କଣ୍ଠାରୁ[୨୬] ସେ ମୁରୁଛି ନ ପାରଇ ଯେ ।୨୨।

ଏକାନ୍ତେ ଭେଟିଲେ ଧରିଥାଇ କରେ କର,
ମନକୁ ମନାଇ କହେ ବିନୟ ଉତ୍ତର[୨୭] ଯେ ।୨୩।

ସେହି ଭରସାରୁ ତାର ନିକଟେ ମିଳିଲା,
ଅନସର[୨୮] ଜନ ପରି ଅନୁଗତ ହେଲା ଯେ ।୨୪।

ବାଳା ଦେଖି ତୋଳାକୁ ପକାଇ ତା ଉପରେ,
ଗୁପ୍ତ ବସ୍ତୁଂ ଆଗ ବାଣୀ[୨୯] ଭଷିଲା ସଧୀରେ ଯେ ।୨୫।

ବେନି ଜନ ବେନି ହୃଦେ[୩୦] କରନ୍ତି ବିଗ୍ୟର ।
ଭରସି କେହି କାହାକୁ ନଦେଇ ଉତ୍ତର ଯେ ।୨୬।

କୁସୁମକୁ ଦେଖାଇ[୩୧] କହିଲା ବାଳୀ ଏତେ
ଏ କୁସୁମ ତୋଳି କେହୁ[୩୨] ଆଣିଦେବ ମୋତେ ଯେ ।୨୭।

ଶୁଣି ଯୁବା ଅତି ନିକଟକୁ ଗଲା ତାର ।
କହିଲା[୩୩] କୁସୁମ ଆଣି ଦେବି ମୁଂ ସତ୍ୱର ଯେ ।୨୮।

---

୨୨-'କ', 'ଖ'-ପାରତି; ୨୩-'କ', 'ଖ'-ଇଛଇ; ୨୪-'ଖ' ବଚନ; ୨୫-'କ', 'ଖ'—ତାହାକୁ; ୨୬ 'କ'—ଉତ୍କଣ୍ଠାରି: ଖ—ଉତ୍କଣ୍ଠାରୁ ୨୭—'ଘ'-ଅପାର; ୨୮-'କ', 'ଖ' ଅନୁସରି; ୨୯-'ଘ' ବାଣୀ ଆଖ ; ୩୦—'ଘ'—ଜନଙ୍କବେ ବେନି; ୩୧—'ଘ'—କୁସୁମକୁ ଦେଖ ହେ; ୩୨-'ଘ'-କେହୁ ତୋଳି; ୩୩-'ଘ'-ବୋଇଲା ।

ଏଥକୁ କି ଦେବ ତୁମ୍ଭେ କହ ସତ୍ୟକରି,
ଶୁଣି ଲଜ୍ଜେ ଲପନକୁ ନୁଆଁଇ ସୁନ୍ଦରୀ[୩୪] ଯେ ।୨୯।

ରସିକ ରତନ ହସି କହିଲକ ପୁଣ,
ନ ଦେଇ ତ ବଚନ ତୁ ହୋଉଛୁ[୩୫] କୃପଣ ଗୋ ।୩୦।

ବାଳକ କାଳରୁ ତୋତେ ଅଛି ଅନୁସରି,
ତୁ ତ ଜାଣିଥିବୁ ହେମ ଚମ୍ପକ[୩୬] ଗଉରୀ ଗୋ ।୩୧।

ସମୁଦ୍ର ପରଯେ ତୋହୋଠାରେ ମୋର[୩୭] ଆଶ,
କର ଯୋଡ଼ି କହୁଅଛି ନ କର ନିରାଶ ଗୋ ।୩୨।

ଏ ବଚନ ଶୁଣି ହରଷରେ ସେ ଯୁବତୀ,
ଲଜ ଲଜ କରି କହେ ମଧୁର ଭାରତୀ ଯେ ।୩୩।

ଯୁବାବର ଫେଡ଼ି କହ ତୁମ୍ଭେ କି ମାଗୁଛ ।
ନ କହି କାହିଁକି ଯେଡ଼େ ଭଙ୍ଗୀ ଆଚରିଛ[୩୮] ହେ ।୩୪।

ଏହା ଶୁଣି ରସିକ କହିଲା କର ଧରି,
ଶରଣ ପଶୁଛି ତୋରେ[୩୯] ସାଧୁତ କୁମାରୀ ଗୋ ।୩୫।

ଅନୁସରି ଥିବି ତୋତେ ପରିଷ୍କର ପଣେ,
ଅଙ୍ଗ ଛାଇ ପରି ନ ଛାଡ଼ିବି ଯିବୁ ଯେଣେ ଗୋ ।୩୬।

ମୁଁ ତୋତେ[୪୦] ଭଜିବି ତୁ ଭଜିବୁ ଭାବେ ମୋତେ,
ପ୍ରାଣବନ୍ଧୁ ନିରାଶ ନ କର ଆଉ ଚିତ୍ତେ ଗୋ ।୩୭।

ଶୁଣି ବାଳା କହିଲା ମୁଁ ଅବିଭଇ[୪୧] ସତ,
ତାତ ମାତ ବିନୁ ଦେହେ ନାହିଁ ମୋ ଆୟତ୍ତ ହେ ।୩୮।

ସେ ଯାହାକୁ ଦେବେ ମୁଁ ତାହାର ହେବି ସିନା,
ଯେଉଁ ରୂପେ କରିଥିବ ବିଧାତା ରଚନା ହେ ।୩୯*।

---

୩୪-'ଘ'-ଲୁଆଁଇଲା ବାଳୀ; ୩୫-'ଗ'-ବଚନରେ ହୋଇଚ; ୩୬-'କ'-ଚମ୍ପେକ; ୩୭-'ଖ'-ମୋର ତୋହଠାରେ; ୩୮-'ଖ'-ଅ଼ଚରୁଛ; ୩୯-ତତେ; ୪୦-'କ' ତତେ, ୪୧-'ଖ'-ଅବିବାହୀ; *'ଘ' ପୋଥିରେ ୩୯ଶ ପଦଟି ୪୧ଶ ପଦପରେ ଅଛି; ।

ତଥାପି ତୁମ୍ଭଙ୍କୁ ଯେତେ ସତ୍ୟ କରୁଅଛି[୪୨],
ପିଣ୍ଡରେ ପରାଣ ଥିଲେ ନ ପାରିବି ମୁଛି[୪୩] ହେ ।୪୦।

ଉଚ୍ଚୁର ହେଉଛି ଆଗ ଫୁଲ ଦିଅ ତୋଳି,
ପଛେ ପୁଣି କହିବ ସଙ୍ଗତେ ଛନ୍ତି ଆଳୀ ହେ ।୪୧।

ଭେଟ ହୋଇ ସିନା ଆଜ ଓଷା କୋଠିଠାରେ[୪୪];
ତୁମ୍ଭେ ଯାହା ମାଗିବ ମୁଁ ଦେବି ସେହିଠାରେ[୪୫] ହେ ।୪୨।

ଏ ବଚନେ[୪୬] ମୋହିତ ରସ କରି[୪୭] କୁମରକୁ,
ଦେଲା ଫୁଲ ତୋଳି ଘେନିଗଲା ମନ୍ଦିରକୁ ଯେ ।୪୩।

ଯିବା ବେଳେ ମାତ୍ର ଯୁବା ଏତିକି କହିଲା,
ଜୀବଧନ[୪୮] ମୋ ଜୀବନ ଆଜୁ ତୋର ହେଲା[୪୯] ।୪୪।

ନିରାଶ କରିବୁ ଯେବେ ଯିବଟି ପରାଣ,
ମୁଁ ତୋହର ପରିହାର ନୋହିବୁ ଦାରୁଣ ଗୋ ।୪୫।

ଏ ବଚନ ଶୁଣି ବାଳୀ ପାଇଟି[୫୦] ଗୁହିଁଲା,
ଯୁବା ହୃଦ ବନ୍ଧୁ ମନ ମୀନ[୫୧] ଘେନିଗଲା ସେ ।୪୬।

ସତ୍ୱରେ ସଦନେ ଯାଇଁ ହୋଇଲା ପ୍ରବେଶ,
କୁମାର[୫୨] ସେନେହ[୫୩] ବାଣୀ ବିଗ୍ଭରି ମାନସ ଯେ ।୪୭।

ରସିକ ରତନ ପୁରେ ପରବେଶ ହୋଇ,
ରଙ୍କ ରତନ ଲଭିଲା ପରି ତୋଷ ହୋଇ ଯେ ।୪୮।

ତା ଭବ ଭବନା କରି ବହିଲା ଦିବସ[୫୪],
ଭଣେ ରାମଚନ୍ଦ୍ର ପଟ୍ଟନାୟକ ଏ ରସ ଯେ[୫୫] ।୪୯।

—୦—

୪୨-'କ'-କରିଅଛି; 'ଘ'-ମୁଁ କରୁଛି । ୪୩-'ଖ' ମୁର୍ଚ୍ଛି, 'ଗ'-ନପାରେ ମୁରୁଛି; ୪୪-'ଖ'-କୋଠିଠାର; ୪୫-'ଖ'-ସେହିଠାର; ୪୬-'କ'—ବଚନ; ୪୭-'ଖ' ମୋହିତ କରିଣ; ୪୮-'ଖ'-ପ୍ରାଣବନ୍ଧୁ; ୪୯-'କ', 'ଖ' ତୋ ରହିଲ; ୫୦-'ଖ'-ଖେଳଟି; ୫୧-'ଖ'-ହୃଦୁ ମଦନ ମୀନକୁ; ୫୨-'ଘ'-କୁମାରୀ; ୫୩-'କ'-ସେନହ; ୫୪-'ଘ'-କରି ଲଭିଲ ଆନନ୍ଦ; ୫୫-'ଢ'-ଏ ଛାନ୍ଦ ଯେ, 'ଙ'-ହେ; 'ଗ'-ହେ ।

# ଦ୍ୱିତୀୟ ଛାନ୍ଦ

( ଗଗ : ଚକ୍ରକେଳି ବାଣୀ* )

ଏଥୁ ଅନନ୍ତରେ ଶୁଣ ରସିକ, ଯୁବା କୁମାରୀ ଭବରେ ଉତ୍ସୁକ[1] ।୧।
ଯହୁଁ ବର୍ଣ୍ଣିଲ ବଚନ ପୀରତି, କାମ ମରମକୁ ଦେଲ କରତି[2] ।୨।
ରତି ନୋହିବାରୁ ହୃଦ ଦହିଲ, ଜୀବ ସଙ୍ଗତ ଲୋଭରେ[3] ରହିଲ ।୩।
ରୂପ ନିଷ୍କଳେ ମଜ୍ଜିଲ ନୟନେ, ଦେହ ଅଥୟ[4] ଭୋଜନ ଶୟନେ[5] ।୪।
ମତି ବଳିଲ[6] ରତିକି ତାହାର, ସୁଖ ନୋହିଲ ସୁବେଶ ଆହାର ।୫।
ବେଳୁଂବେଳୁଂ ତାର ସ୍ନେହ[7] ବର୍ଦ୍ଧିଲ, ଆନ ବିଷୟମାନଙ୍କୁ ଛାଡ଼ିଲ ।୬।
ଗେମଲଗ୍ନ ଦମ ଦମ ହୃଦୟ[8], ମନେ ଶୋଭଙ୍ଗୀ[9] ହୋଇଲ ସଦୟ[10] ।୭।
ଯେଉଂ ରୂପରେ ବଚନ ଭଷିଲ, ମନୁ ସକଳ ସନ୍ତାପ ନାଶିଲ ।୮।
ତାହା[11] ଭବି[12] ଭବି ଶେଷ ଦିବସ, ଆସି ରଜନୀ ହୋଇଲ ପ୍ରବେଶ ।୯।
ଏଣେ କୁମାରୀଗଣ ସଙ୍ଗେ ହାର, ଓଷା ପୂଜିବା ଆଶେ ହୋଇ ତୋର ।୧୦।
ସବୁ[13] ସମ୍ଭାର[14] ସଙ୍ଗତେ ଘେନାଇଂ, ଓଷାକୋଠିରେ ପରବେଶ ଯାଇଂ[15] ।୧୧।

---

* ଗଗ ସଂପର୍କିତ ନିର୍ଦ୍ଦେଶ 'କ' ପୋଥିରେ ନାହିଁ, 'ଗ' ପୋଥିରେ କୀଟ ଦ୍ରଷ୍ଟ ହୋଇ ନଷ୍ଟ ହୋଇଯାଇଛି । 'ଖ' ପୋଥିରେ–'ଗଗ ଚକ୍ରକେଳି ବାଣୀରେ ଗାଇବ" । 'ଘ' ପୋଥିରେ—"ଗଗ–କେ×××ଚକ୍ରକେଳି ବାଣୀରେ ।"

୧—'କ' ପୋଥିରେ ୧ମ ପଦନାହିଁ; ୨—'ଗ'-କାମମଦନକି ଦେଲ କରତି; ୩-'କ', 'ଖ'-ଶିବ ସଙ୍ଗତ ମଧ୍ୟରେ; ୪—'ଘ'-ଦେହେ ବେପଥୁ; ୫—'କ' ଭୋଯନ ସଂମ୍ନନେ; ୬- କ'-ବର୍ଦ୍ଧିଲ; ୭—'ଘ'- ତା ଉତ୍କଣ୍ଠା; ୮-'କ'-ଗେମ୍ନଲଗ୍ନ ବଚନମ ହୃଦୟ, 'ଘ'-ଗମ ଲଭି ହୃଦୟ ସମଦୟ; ୯-'କ', 'ଖ',-ମନେଣ ବାଗୀ, 'ଘ'-ମନେ ଏ ବାଣୀ, ୧୦-'ଗ'-ହୋଇ ରସଦୟ; ୧୧—'ଗ'- ତା; ୧୨-'ଖ'—ଭବ ଭବି; ୧୩—'ଖ'-ସର୍ବ, ୧୪-'ଗ'—କୁମାରୀ; ୧୫—'ଗ'-ହୋଇ;

ବହୁ କୁମାରୀମାନେ[16] ସେଠାବରେ, ଭଦ୍ୟ ନାରୀମାନେ ଛନ୍ତି ସଙ୍ଗରେ ।୧୨।
ଫୁଲ ଢକୁଚି ମଣ୍ଡିଲେ ମନ୍ଦିର, ଆଗେ ବାଢ଼ି ନଇବେଦ୍ୟ ସମ୍ଭାର ।୧୩।
ନିଶି ଭୋଗ୍ୟ ହୋଇଅଛି ଉହିଁରେ, ଏଣେ[17] କୁମାର କୁମାରୀ ଆଶାରେ ।୧୪
ନିଜ ସଖାଙ୍କୁ ଘେନିଣ ସଙ୍ଗରେ[18], ଯାଇ୍ଣ ପ୍ରବେଶ ଓଷା କୋଠିଠାରେ ।୧୫।
ଓଷା ଦେଖିବା ସମସ୍ତଙ୍କ ମତି, କେହି ନ ଜାଣେ ଯେ ଦୁହିଁଙ୍କ ପ୍ରୀତି[19] ।୧୬
ବାଲ୍ୟ ଭବ ହୋଇଛି ଦୁହିଁଙ୍କରି, ଯେଣୁ ନପାରେ କେହୁ[20] ଭେଦକରି ।୧୭
ବାଳା[21] ହୋଇଅଛି ଯେଣୁ ବାଳୁତ, ପ୍ରୀତି ବୋଲି କେ ବିଚାରିବ ଚିତ୍ତ ।୧୮।
ଏକ ସ୍ଥାନରେ ଯେବେ ବସିଥାନ୍ତି, ହସ କଉତୁକକୁ ଆଚରନ୍ତି ।୧୯।
ତେବେ କେହି ତା ମନେ ନଜାଣଇଂ[22], ନିଜ ସୁତ ସୁତା ଭବ[23] ମଣଇଂ ।୨୦।
ଏଣୁ ହୋଇଲା ବଡ଼ ଅପସର[24], ମିଳି କୁମାରୀ ପାଶରେ[25] କୁମର ।୨୧।
ନେତ୍ର ମିଳନେ ଯୁବତୀ ହସିଲା, ଯୁବା ସମୀପରେ ଆସି ବସିଲା ।୨୨।
ଦୁହିଁଙ୍କର ଜାତ[26] ହେଲା ବିକାର, ଯେସନ୍ତେ ଉସେ୍ତ ଅଛନ୍ତି[27] ବୈଶ୍ୱାନର[28] ।୨୩
ଯୁବା କରେ କର ତ୍ରାଜ ଧଇଲା, ଆଣି ନିଜ ହୃଦରେ ଲଗାଇଲା[29] ।୨୪।
ଗଣ୍ଡ ମଣ୍ଡଳରେ ଦେଲା ଚୁମ୍ବନ, କଲା ଅଧରୁ ମଧୁରସ ପାନ[30] ।୨୫।
ଆଲିଙ୍ଗନ କରି କାମ କାତରେ, ଭୟ ସଂକୁଚ ଚରିସି[31] ଚିତ୍ତରେ ।୨୬*
ପୁଣି ବଦନରେ ଦେଲା ଚୁମ୍ବନ, ଯୁବା କହିଲା ବିନୟ ବଚନ ।୨୭*
ପ୍ରାଣବନ୍ଧୁ ମୁଂ ମାଗୁଅଛି ଯାହା, ମନୁ ପାସୋର ଗଲ ନିକି[32] ତାହା ।୨୮।

---

୧୬-'ଗ'-କୁମାରୀସଙ୍ଗେ; ୧୭-'କ'-ଏତେ, 'ଖ' ଏଣୁ; ୧୮-'ଗ' 'ଘ'-ଘେନି ସଙ୍ଗତରେ; ୧୯-'କ'- ପ୍ରତି; ୨୦-'ଗ'-କେହି; ୨୧-'ଗ'-ଏଣେ; ୨୨-'ଖ' ନଗଣଇଂ ୨୩—'କ'-ସୁତ ଶୁଣି ଭବି, 'ଖ'-ସୁତ ଶୁଣି ଭବ. 'ଗ'-ସୁତ ସୁତା ସମ; ୨୪-'ଗ'-ହୋଇଲକ ବଡ଼ ଅହର; 'ଘ'-ଅବସର; ୨୫—'ଖ'-ପାଖରେ; ୨୬-'କ'-ଜତି; 'ଖ'-ଚିତ୍ତ; ୨୭-'ଘ'-ଉସ୍ତ ଅଛନ୍ତ, ୨୮-'ଖ' ବୈଶ୍ୱାନର, ୨୯-'ଘ' ପୋଥିରେ ୨୪ଶ ପଦ ନାହିଁ; ୩୦-'ଘ'-ଯୁବାକହିଲ ବିନୟ ବଚନ। *'ଘ'-୨୬ ଓ ୨୭ ପଦ ନାହିଁ । ୩୧-'ଙ'-ସ୍ୱଙ୍କୁଚିତ ହୁଁଷି, 'ଖ'-ସଙ୍କୁଚନୁ ବଶ; ୩୨-'କ'-ଗଲଣିକି ।

ଶୁଣି ପ୍ରତିଭଷା କଲ ଚତୁରୀ,  ତୁମ୍ଭେ ଜାଣିଲ ଏକଥା କି କରି ।୨୯।
ଅନୁଗତ ଜନେ ଏହା କହି କି[୩୩], ଯାହା ମାଗିଲ ନ ଦିଅ[୩୪] କାହିଂକି ।୩୦।
ମନ ଜୀବନ ସମର୍ପିଲଠାରେ[୩୫], ଆଉ କି ଦ୍ରବ୍ୟ ଅଛି ଯେ ବାହାରେ ।୩୧।
ଏହା ଶୁଣି ଯୁବା ଅତି ପ୍ରମୋଦ, ହେଲ ଲଭିଲ ପରି ଇନ୍ଦ୍ରପଦ ।୩୨।
କର ଧରି ଧଇଲ ତା ଚରଣ, କାମ ଭୟରେ ପଶିଲ ଶରଣ ।୩୩।
ନ ଛାଡ଼ିବାକୁ ନିୟମ କରଇ, ପ୍ରାଣ ସମର୍ପି ହୋଇଲ ବିନଇ ।୩୪।
ବନ୍ଧୁ ନିରାଶ ନ କରିବୁ ମୋତେ; କର ଧରି ମୁଂ କହୁଅଛି ତୋତେ ।୩୫।
ନିତି ଏକାନ୍ତ ସ୍ଥାନେ ହେବୁ ଭେଟ, ମନେ ନ ଧରିବୁ କିଛି[୩୬] କପଟ ।୩୬।
ଅନୁସରି ମୁଂ ଗ୍ରହିଂଲେ ଗ୍ରହିଂମୁ[୩୭] ଗ୍ରଟୁ ବିନୟ କହିଂଲେ କହିବୁ[୩୮] ।୩୭।
ଦେଖା ନ ଦେଇ ପୁରେ ନରହିବୁ ମୋହ[୩୯] ଭେଟକୁ ବାହାର ହୋଇବୁ ।୩୮।
ମୁଂ ଗୋ ତୋସଙ୍ଗ[୪୦] ନୋହିଲେ ମରିବି, ଦଣ୍ଡେ ନଦେଖିଲେ[୪୧] ପ୍ରାଣହାରିବି ।୩୯
ଯେତେ ପ୍ରତିପାଳିଥିବୁ ସୁନ୍ଦରୀ[୪୨], କାମେ ନ ପକାଇବୁ[୪୩] ମୋତେ ମାରି ୪୦
ଏତ କହୁଂ କହୁଂ ଉଷା ବଢ଼ିଲ, ଯୁବା ଯୁବତୀ ସନ୍ଦେହ ଛାଡ଼ିଲ ।୪୧।
ସବୁ କୁମାରୀମାନେ ହୋଇ ମେଳ ଯେଝା ପୁରକୁ ଗଲେ ତତକାଳ[୪୪] ।୪୨।
ଯେହୁ ବେନି ଜନଙ୍କ ମନ ତହିଂ, ଛଡ଼ା ଛଡ଼ି ହୋଇବାକୁ ନୁହଇ[୪୫] ।୪୩।
ଅନାୟତ ବାସରୁ[୪୬] ହେମଗୋରୀ, ଛାଡ଼ି ଯୁବାକୁ ଗଲ ନିଜ ପୁରୀ ।୪୪।
ହେଲ ପରବେଶ ଯାଇଂ ସଦନେ, ମନ ଚଞ୍ଚଳ ହୋଇଲ ମଦନେ ।୪୫।
ଯୁବା ପରବେଶ ଯାଇ[୪୭] ମନ୍ଦିରେ, ତାର ଭବ ଭବଇ ହୃଦୟରେ ।୪୬।
ଦୁଇ ମନ ଦୁଇଠାରେ ରହିଲ । ଅତି[୪୮] ସ୍ନେହକୁ ଯୁବାକୁ ଦହିଲ ।୪୭।
ଛାନ୍ଦ ଦୁତୀଅ[୪୯] ହୋଇଲକ ଶେଷ, କବି ରାମଚନ୍ଦ୍ର କହେ ଯେ ରସ ।୪୮।



---

୩୩-'ଖ'-କାହିଂକି; ୩୪-'ଖ'-ନନିଅ; ୩୫-'କ'-ସମପ୍ରିଲଠାରେ; ୩୬-'ଘ'-ଚିତ୍ତେ ନଧରିବୁ ଲେସ; ୩୭-'ଖ', 'ଘ'-ଗ୍ରହିଂବୁ; ୩୮-'ଘ' ପୋଥିରେ ୩୭ଶ ପଦପରେ ଅତିରିକ୍ତ ପଦ-"ଯେବେ ଯିବି ମୁଁ ତୋ ପାଶେ ପାଛୋଟି । ଥରେ ଥରେ ଗ୍ରହୁଂଥିବୁ ପାଳଟି" ('କ', 'ଖ', 'ଗ'ରେ ନାହିଁ); ୩୯-'କ'-ମୋ; ୪୦-'କ'-ସଙ୍ଗୀ; ୪୧-'କ'-ନଦେଖି; ୪୨-'ଗ', 'ଘ'-କୁମାରୀ; ୪୩-'କ'-ନ ପଡ଼ଇ; ୪୪-'ଗ'--ତତ ପୁର; ୪୫-'ଘ' - ହେବାକୁ ନବଳଇ; ୪୬-'ଖ'-ବସିଛି; ୪୭-'ଘ'-ଏଣେ; ୪୮-'କ'-ତାତି; ୪୯-'ଖ'-ଦ୍ୱିତୀୟ ।

# ତୃତୀୟ ଛାନ୍ଦ

( ରାଗ : ବଙ୍ଗଳାଶ୍ରୀ )

ରସିକ ରତନ କୁମାରୀ ଭବରେ ଦିନୁ ଦିନ[1] ବଶ ହୋଇ
କ୍ଷଣେ ନ ଦେଖିଲେ ନୟନରେ ତାକୁ ନିମିଷ ଯୁଗ ମଣଇଂ । ୧ ।

ଅନୁଗତ ହୋଇ ଅନୁସରିବାରେ ବଶ ହୋଇଲା କୁମାରୀ
ପ୍ରୟୋଗ[2] କଲା କି ସ୍ତମ୍ଭନ ମୋହନ ବଶ ଉଚ୍ଚାଟନ କରି । ୨ ।

କ୍ଷଣେ ନ ଦେଖିଲେ ଅନ୍ଧାର ଦିଶଇ ଯୁବାକୁ ଯୁବତୀ ମୁଖ
ଦେଖୁଥିଲେ ତାକୁ ଅଧିକେ ବଢ଼ଇ ନୟନେ ପରମ ସୁଖ । ୩ ।

ଚତୁରୀମଣି ନ ମଣିଲେ ହରଷ କରଇ ନାହିଂ[3] ନିରଶ
କୁମାର ଅନୁସରଣକୁ ଘେନିଣ ହୋଇଥାଇ ଅତି ବଶ । ୪ ।

କାରଯ ବ୍ୟାଜେ ପୁରୁଷ[4] ହୋଇ ବାହାର ଦେଖା ହୋଉଥାଇ[5] ଆସି
ନୟନ ମେଳ ହୋଇବାରୁ ମନକୁ ହରଇ ଅଳପ ହସି । ୫ ।

ପ୍ରତିଦିନ ସ୍ନାନ ଅର୍ଥରେ[6] ରମଣୀ ଯିବା ବେଳେ ସରୋବର
ଅତିଷ୍ଠ କରୁଥାଇ[7] ଅନୁସରଣ କରିବାକୁ ଯୁବା ବର । ୬ ।

ସମୟ ସରିଲେ[8] ଗ୍ରଟୁବାଣୀ କହି ଧରଇ ତାର ଶ୍ରୀକର[9]
ମୂର୍ଚ୍ଛି[10] ନ ପାରଇ କାତର ହୁଅଇ ନୟନୁ ହେଲେ ଅନ୍ତର[11] । ୭ ।

ଦିନକୁ ଦିନ ଅନୁଗତ ହେବାରୁ ବଳିଲା ବେନି ପୀରତି
ଜୀବନେ ଯୁବତୀ ମୂର୍ଚ୍ଛି[12] ନ ପାରିଲା ପୁରୁଷର ସେହି ମତି । ୮ ।

---

୧ 'ଖ' ଦିନୁ ଦିନ ; ୨ 'କ' ପ୍ରୟାଗ ; ୩ 'ଖ' ଯହିଂ ;
୪ 'କ' କାରଜକୁ ବୁପେରୁ, 'ଖ' ଳସା ବଶୁ ଦୁରୁ ; ୫ 'ଘ' ଦେଉଥାଇ ;
୬ 'ଖ' ଆଚରେ ; ୭ 'ଖ' କରିଥାଇ ; ୮ 'ଘ' ସହିଲେ ; ୯ 'କ' ଧରିଇ
ଶ୍ରୀକର ; ୧୦-'ଖ' ମୂର୍ଚ୍ଛି ; ୧୧-'କ'ନେଟଇ ; ୧୨-'ଖ' ମୂର୍ଚ୍ଛି, 'ଘ' ଛାଡ଼ି ।

ଟିକା ଟିକି ବେନି ହୃଦେ କରିବାରୁ ବଢ଼ିଲା ପୀରତି ଭବ
କେହି କାହାକୁ ମନେ ମୁଛି ନ ପାରେ ଯହୁଂ ନୋହିଅଛି[୧୩] ଲଜ ।୯।

ଏମନ୍ତେ ପ୍ରତି ଦିବସରେ ରସରେ ସରେବରେ ମେଳ ହୋଇ
ଏକାନ୍ତରେ ଯୁବା କୋଳରେ ବସାଇ ବଦନେ ଚୁମ୍ବନ ଦେଇ ।୧୦।

ଚିବୁକ ଧରି ଗୁପ୍ତ ବାଣୀ କହିଣ ଭିଡ଼ଇ ଆଣି[୧୪] ଭୁଜରେ
ମୁଖେ ମୁଖ ଦେଇ ସୁଖେ ପାନ କରେ ତାର ଅଧରୁ ଅଧରେ ।୧୧।

ଜାଣଇ ନାହିଁ ମେଲାଣି ଦେବା ରୀତି ଯୁବାଠାରୁ[୧୫] ଜବାଧରୀ
ସ୍ନେହ ରଖିଥାଅ ପଲଟି ଏତେକ[୧୬] କହି ଉଠେ କୃଶୋଦରୀ ।୧୨।

ଅନୁରାଗେ[୧୭] ଯେବେ ରସିକ କହଇ ଆଉ ଥରେ କୋଳେ ବସ
ଅନ୍ତରେ ପ୍ରେମ ବାହାରେ ଲାଜ ରଖି ହୋଉଥାଇ[୧୮] ହସ ହସ ।୧୩।

ଖର ଶେଷ ହୋଇ[୧୯] ପୁରକୁ ଗମଇଁ ଆସୁଥାଇ ପୁଣି ପୁଣି
ରସିକ ଆସକତ ହୋଇ ତାଠାରେ[୨୦] ଅନୁସରି ମନ ଜାଣି ।୧୪।

ମାଳତୀ କଳିକା ଅଳି ନ ଛାଡ଼ିଲା ପରି ନ ତେଜଇ[୨୧] ତିଳେ
ପାଣି ଆଣି ଯିବା ବେଳରେ ଭେଟଇ ଲାଗିଥାଇ ନଦୀ କୂଳେ ।୧୫।

ଭେଟୁ ଗୁପ୍ତ କହି ମନକୁ ହରଇ ଅନୁସରି କରେ ସେବା
ଜଣାଉଥାଇଁ ଶିବଙ୍କୁ[୨୨] ବନ୍ଧୁ ମୋର କେବେଂ ଦିନ ହେବ ଯୁବା ।୧୬।

ଏମନ୍ତେ ଦିନକୁ ଦିନ ବଳିବାରୁ ବରଷ ତେର ହୋଇଲା
ଶରଦ ଚନ୍ଦ୍ରମା ପରି ଚନ୍ଦ୍ରମୁହୀ[୨୩] ଅତି ସୁନ୍ଦର ଦିଶିଲା ।୧୭।

ନାଗର ମନକୁ ହରିନେଲା[୨୪] ସ୍ତନ ନାଗ ରଙ୍ଗ[୨୫] ପରି ତାର
ଲଳିତ[୨୬] ସୁବାହୁ ଦଳିତ ହୋଇଣ ରତି ରହିଲା ନଗର[୨୭] ।୧୮।

---

୧୩-'କ' ହୋଇଅଛି ; ୧୪-'କ' ଆସି ; ୧୫-'କ' ଯୁବା ପରି ; ୧୬-'ଖ' ଏତକ, 'ଘ' ସେନେହ ରଖି ଗଲିଟି ଭୟରେ ; ୧୭-'ଖ' ତାକୁ ରଗେ ; ୧୮-'ଖ' ହେଉଥାଇ; ୧୯-'କ' ପରସଗର ହୋଇ, 'ଖ' ପରସ୍ପର ହୋଇ ; ୨୦-'କ', 'ଖ' ଠାବରେ ; ୨୧-'କ','ଖ' ନତେ ନାଇଁ ; ୨୨-'କ' ଥାଇଂସି ବନ୍ଧୁ ; ୨୩-'ଘ' ଚନ୍ଦ୍ରମୁଖ ; ୨୪-'ଘ' ହରି ହେଲ ; ୨୫-'ଖ', 'ଘ' ନାଗ ରଙ୍କ ; ୨୬-'କ','ଖ' ରତିତ ; ୨୭-'ଖ' ରତି ରହିଲା ନିକର, 'ଘ' ଉର ରହେ ଲଳିତ୍ୟର ।

ଅଙ୍ଗ ଚଞ୍ଚଳ ଉଡ଼ିବା ଭଙ୍ଗୀ ଜାଣି[୨୮] ଚଞ୍ଚଳ ନୟନ ହେଲା
ଯୁବା ଜୟ ଭବ ଯୁବ ଅଭିମୁଖ[୨୯] ଯୁବତୀ ବର ହୋଇଲା ।୧୯।

ଯେମନ୍ତ ଦେଖିଣ ମାତ ତାତ ତାର ବିଭା ବିଧି ବିସ୍ତରିଲେ[୩୦]
ସମାନ କୁଳରୁ ବର ବରି ଆଣି ପ୍ରଦାନ[୩୧] ତାହାକୁ କଲେ ।୨୦।

ଉଚ୍ଛବ ବିଧିରେ ଗହଳ ହୋଇଲା[୩୨] ମଙ୍ଗଳ ଦିନ[୩୩] ସଙ୍କଟ
ଯେତେ ଉଦ୍ୟମ କଲେ ଆଉ ନୋହିଲା ଯୁବାକୁ ଯୁବତୀ ଭେଟ ।୨୧।

ଯେସନେ କୁମୁଦ ଚନ୍ଦ୍ର ଦରଶନ ମୁଦିର[୩୪] ଆଚ୍ଛିନ କରେ
କୁମାରୀ କୁମାର ଅନୁରାଗ ଆଉ ହୋଇଲା ସେହି[୩୫] ପ୍ରକାରେ ।୨୨।

ଚକ୍ରବାକ[୩୬] ସୁଖ ନିଶି ନିରୋଧିଲା ପରି ବିଭା ହେଲା ତହିଁ
କୁମାରୀ ଭବ ଚିତ୍ତ ଆଇ ଯୁବାକୁ[୩୭] କାମ ଶରେ ଦେଲା ଦହି[୩୮] ।୨୩।

ଯେମନ୍ତେ ବର କନ୍ୟାଙ୍କର ହୋଇଲା ସପତ ମଙ୍ଗଳା ଶେଷ
କୁଳ ବିଧିରେ କନ୍ୟାକୁ ଛାଡ଼ି କରି ନିଜ ପୁର ଗଲା ପୁଂଷ ।୨୪।

ଯୁବା ହେଲେ ପୁଣି ଜନନୀ ଜନକ କନ୍ୟା ଦେବେ[୩୯] ପଠାଇ
କେବଳ ବର ଦିଗରୁ ଜଣେ ମାତ୍ର ଆସିବେ ତାହାକୁ ନେଇ[୪୦] ।୨୫।

ଏମନ୍ତେ ଗତ ଆଗତ ହୋଇକରି ଅଛି ତାହାଙ୍କ କୁଳରେ
ଯେ ଘେନି ରସିକ ପରାଣ ରଖିଲା ନ ଯାଇ କୁସୁମ ଶରେ ।୨୬।

ଯେଥୁ ଅନ୍ତେ ଯୁବା ଦେଖିବାକୁ ତାକୁ[୪୧] ଅନୁସରଣ କରଇ
ସଙ୍କୋଚ[୪୨] ଭବକୁ ଭଜି[୪୩] ନବ ବାଳୀ ପୁରୁ ବାହାର ନୁହଇ ।୨୭।

---

୨୮-'କ', 'ଖ' ଚଞ୍ଚଳ ଉଡିବା ଭଙ୍ଗୀ ଜାଣିମାର, 'ଗ' ଅଞ୍ଚଳ ଉଡ଼ିବା ଭଙ୍ଗୀମା ଜାଣିମା ; ୨୯-'ଗ' ଜୟଭବ ଅଭିମୁଖ ; ୩୦-'ଖ' ଆଚରିଲେ ; ୩୧-'କ' ପ୍ରଧାନ ; ୩୨-'କ' ଉଛ ବିବିଧ ଗହଳ ହୋଇ ଦାଗ, 'ଘ' ପାଦଟି ନଷ୍ଟ ; ୩୩-'କ' ପ୍ରତିଦିନ ; 'ଗ'-ସପ ××× ; 'ଘ' ପାଦଟି ନଷ୍ଟ ; ୩୪-'ଗ' କୁମୁଦ ; ୩୫-'ଗ' କୁମାରୀ ଅନୁରାଗ ଆଉ ନୋହିଲା କୁମର ସେହି ; ୩୬ 'କ' ଚନ୍ଦ୍ର×× ; ୩୭-'ଖ' ଯିବାକୁ ; ୩୮-'କ' ହେଲା ; ୩୯-'କ' ଦେଲେ ; ୪୦ 'ଘ' ତାହାକୁ ଆସିବେ ନେଇ ; ୪୧-'ଘ' ତାକୁ ଦେଖିବାକୁ ଯୁବା ; ୪୨-'ଖ' ସଂକୋଚ ; ୪୩-'ଖ' ଲଭି ।

ଯେ ଘେନି ରସିକ ବିରହ କାତରେ ହୁଅଇ ଅତି ଆକୁଳ
ନିଶି ଦିବସ[୪୪] ଆହାର ଦୂର କରି ଲୋଡ଼ୁଥାଇ ତାର ମେଳ ।୨୮।

ଏମନ୍ତେ ଦିନ ପାଞ୍ଚ ସାତ ଉତାରୁ ପୁରରୁ ବାହାର[୪୫] ହାର
ଦୃଷ୍ଟି ଦରଶନ ଲଭିଲ କୁମର ନିକଟ[୪୬] ସଂକଟ ହେଲ ।୨୯।

ଜାଣି ଯୁବତୀ ଅନୁରାଗ ପ୍ରକାଶି[୪୭] ପାଇଟି ରହିଲ କ୍ଷଣେ
ରସିକ ରତନ କରଯୋଡ଼ି କଲା ନୟନେ ବିନତି ଏଣେ ।୩୦।

ଚତୁରୀମଣି ଅଣାୟତ ବଶରୁ କହି ନ ପାରିଲ ଭାଷା
ଯେଣୁ କରି ନିଶି ଦିବସେ ଯୁବାର ବଢ଼ି ଗଲା ପ୍ରତି ଆଶା[୪୮] ।୩୧।

ଦୁହିଂଙ୍କ ମନ ଦୁହିଂଙ୍କଠାରେ ଥାଇ ବିହି ବଶୁ[୪୯] ଯୋଗ[୫୦] ନୋହେ
ସ୍ନେହ ବିରହ[୫୧] ବଶରୁ ବେନି ତନୁ ମଦନ[୫୨] ଶାୟକ ଦହେ ।୩୨।

ଯେତେ କରି ଯୁବା ଜଗିଲେ ହେଂ ତାକୁ[୫୩] ଏକା କରି ନ ଦେଖଇ
ସଖୀ ଗୁରୁଜନ[୫୪] ମଧ୍ୟରେ ଭେଟିଣଇ ଚତୁରାକ୍ଷ ମାତ୍ର ହୋଇ ।୩୩।

ଯେ ଘେନି ରସିକ ଝୁରି ଝୁରି ତାକୁ ଚିନ୍ତାରେ ହୋଇଲା ଖିନ
ବିଷୟମାନଙ୍କୁ ବିଷ ପରି ମଣି ବାଳାଠାରେ ଦେଲା[୫୫] ମନ ।୩୪।

ଏକ ଯୁବତୀ ସଦନ ସେ ଠାବରେ ପତି ରହିତା ସେ ନାରୀ
ରସିକ ଅନୁଗତ ହୋଇ ତାହାକୁ ବିନୟ ବହୁତ କରି ।୩୫।

ନିଅମ ଦେଇ ବିଶ୍ୱାସ ଉପୁଜାଇ କହିଲା ତାକୁ ଏ କଥା
ସେ ସବୁ ମନକୁ ଆଣିଲା ଜାଣିଲା ମଣିଲା ହୃଦୟ ବ୍ୟଥା ।୩୬।

ତାର ସଦନକୁ ନିର୍ଜନ ହୋଇଲେ ଅବଶ[୫୬] ଆସଇ ଗୋରୀ
କଥା କହୁଥାଇ ତାକୁ ପରିହାସ ମନକୁ ଏ[୫୭] ଆଦି କରି ।୩୭।

---

୪୪-'ଖ' ଦିବସେ; ୪୫-'ଘ' ବାହାରଇ, ୪୬-'ଘ' ନିକଟେ; ୪୭-'ଗ' ବଶରୁ; ୪୮-'ଖ' ପ୍ରୀତି ଆଶା; ୪୯-'କ' 'ଖ' ବଶ; ୫୦-'ଘ' ବିହିର ସୁଯୋଗ; ୫୧-'ଘ' ବିରସ; ୫୨-'କ' ସଦନ; ୫୩-'ଖ' ଜଗିଲେ ତାହାକୁ; ୫୪-'ଖ', 'ଘ' ପୁରଜନ; ୫୫-'ଘ' ଜଳ; ୫୬-'ଖ' ଅବଶ୍ୟ; ୫୭-'ଘ' କଉତୁକ କଥା କହିଣ ତାହାକୁ ପରିହାସ ।

ଯେମାନ ଦୂତୀ କହିବାନ୍ତୁ ଯୁବାକୁ ଯୁବା ଧଇଲ ତା କର
ବୋଇଲ ତାହାକୁ ଆଜ ଭେଟା[୫୮] ମୋତେ[୫୯] ଯେ ଜୀବ କର ତୋହର[୬୦] ।୧୩୮

ଯେମନ୍ତେ ଶୁଣି ଦୂତୀ ତାକୁ ଭରସା ଦେଇଣ ପଶିଲା ପୁରେ
ରସିକ ରତନ ବିରହ ବେଦନା କହିଲ ବାଳୀ ଛାମୁରେ ।୧୩୯।

ଶୁଣି ଯୁବତୀ ସମୟ ଜଗି କରି[୬୧] ଦୂତୀ ସଙ୍ଗତେ ଅଇଲା
ପୁରୁଷ ବରକୁ ଦେଖି ଲଜ କରି ବଦନେ ବସନ ଦେଲା ।୧୪୦।

ରସିକ ଝାଟିକାରେ[୬୨] ଉଞ୍ଚ ହୋଇଣ ଆଲିଙ୍ଗନ କଲାବେଳେ
ବଦନ ଚୁମ୍ବିଣ କରେ କର ଦେଇ ବସାଇଲା ନେଇ[୬୩] ଚୁକୋଳେ ।୧୪୧।

ଚିବୁକ,ଧରି ମୁଖେ ମୁଖ[୬୪] ଲଗାଇ କହେ ବିନୟ ବଚନ
କି ଘେନି ମନରେ କାମେ ବନ୍ଧ କରି ନିରାଶ କଲୁ ଜୀବନ ।୧୪୨।

ଯେତେକ[୬୫] କଥାକୁ ଯେତେ ସରି କଲୁ ତରୁଣୀ ରତନ ହାର
ଯେହିଁ ମତି ପତି ସଦନକୁ ଗଲେ ଶଙ୍କୋଳିବୁ ନାହିଂ[୬୬] ପର ।୧୪୩।

ଜୀବନେ ଥିଲେ ନ ଛାଡ଼ିବୁ ତୁମ୍ଭକୁ ବୋଲି ଯେ ନିଅମ କଲୁ
ପାଶରେ ତୋର ମୁଂ ଥାଉ ଥାଉ ଗୋରୀ ଦରଶନ ହି ନ ଦେଲୁ ।୧୪୪।

ଯେଥର ଏଣିକି ଯେ ରୂପ[୬୭] କରିବୁ[୬୮] ଯେବେ ଜୀବ ଯିବ ମୋର
ଯେତେ କହି କାମ କାତରେ ରସିକ ଧଇଲା ତାର ପୟର ।୧୪୫।

ଚତୁରୀ ବର ଛଡ଼ାଇ ତାର କର ଗଳାରେ[୬୯] ଭୁଜ ଭିଡ଼ିଲା
କି ଗୋ କି ଯେ ଦଣ୍ଡ[୭୦] ଏ ଛାର କଥାକୁ ବୋଲି ମୁଖେ ଚୁମ୍ବ ଦେଲା ।୧୪୬।

ରସିକ ତା ଭବ ଜଳେ ବୁଡ଼ି ଯାଇ ପାଶୋରିଲ ଦେହ ବୁଦ୍ଧି
ସକଳ ସନ୍ତାପ ଦୂର କଲା ପାଇ ତରୁଣୀ ରତନ[୭୧] ନିଧି ।୧୪୭।

---

୫୮-'କ' ଭେଟି; ୫୯-'ଘ' ତାକୁ ଆଉ ମୋତେ ଭେଟାଇ; ୬୦-'ଗ' ତାକୁ ମତେ ଭେଟାଅ ଜୀବନ ରଖ ମୋହୋର ।" ୬୧-'ଖ' ଜାଣି କରି. 'ଗ' ସଜ କରି; ୬୨-'ଘ' ଧାଡିକାରେ; ୬୩-'ଗ', 'ଘ' ଆଣି; ୬୪-'କ' ମୁଖେ ମୁଖେ; ୬୫-'କ' ଯେତେ; ୬୬-'ଖ', 'ଘ' ଶଙ୍କୋଳିବୁ ମୋତେ ପର; ୬୭-'ଖ' ଗୌରୀ ଯେ; ୬୮-'କ', 'ଖ'-କହିବୁ; ୬୯-'ଘ' ଚତୁରୀ ବହନ ଛଡ଼ାଇ ଗଳାରେ ବେଢ଼ାଇ; ୭୦-'ଖ', 'ଘ' କି ଦଣ୍ଡ ଏ; ୭୧-'ଗ' ଲବଣ୍ୟ ।

ରତି ନୋହିବାରୁ[୭୨] ରସିକ ରତନ ଇବଣୀ ପିତୁଳା ପ୍ରାଏ
ଯେମେ ଯେମେ କାମ ଶର ପ୍ରହାରଇ ଦିଗୁଣେ ହୃଦୟ ଦହେ ।୪୮।

ସୁନ୍ଦରୀ ହି କାମ ରସ[୭୩] ନ ଜାଣିଛି ରତି ବୈଭବ ଆଛନ
ତେଣୁ ଛବାଧରୀ ଆଲିଙ୍ଗନ ପାଇ ତୋଷ କରୁଥାଇ[୭୪] ମନ ।୪୯।

ରସିକ ଆକୁଳ ହୋଇଲେ କହୁଇ ପ୍ରବୋଧ ବହୁତ କରି
କୁମର ବୋଲଇ ବାକୁଳ ହୋଇଛୁ କେଜି ନ ଜାଣିଛୁ ଗୋରୀ ।୫୦।

ତେଣୁ ରେ ସୁନ୍ଦରୀ ଦମ୍ଭ ଭଷା କହୁ କାମ ଚେରେଷ୍ଟା[୭୫] ନବୁଝି
କେବେ ତୁହି ରଜବତୀ ହେବୁ ବାଳୀ[୭୬] ଦିନ ସବୁ ନାହିଂ ହେଜି ।୫୧।

ଶୁଣି ସୁନ୍ଦରୀ ଆଲିଙ୍ଗନ କରିଣ ବୋଲେ ଏ ପ୍ରାଣ[୭୭] ତୁମ୍ଭର
ବିଧାତା କୃପା ହେଲେ ଭୋଗ୍ୟ କରିବ[୭୮] ଆକୁଳେ ଚିନ୍ତା ନ କର ।୫୨।

ଯାଉଛି ମେଲଣି ସଗଗରେ ହୋଉ ଏହି[୭୯] ଦୟା ମୋରେ [୮୦]ଥିବ
ପ୍ରାଣ ତୁମ୍ଭଠାରେ[୮୧] ରଖି ଯାଉଅଛି[୮୨] ଚିନ୍ତ ହୃଦେ ନକରିବ ।୫୩।

କୁମାର ବୋଲଇ କେସନେ[୮୩] ହେ ସଖୀ ମେଲଣି ହୁଅ ବୋଲିବି
ସ୍ନେହ ତୁଟିବ ଯାଅ ବୋଲି ବୋଇଲେ ପାଶେ[୮୪] ରଖି ନ ପାରିବି ।୫୪।

ଦିଅ ତୋ ଖୋଷାରୁ[୮୫] କୁସୁମ ଗୋଟିଏ ସନ୍ତକ ତୋର୍ହର ଥାଉ
ସୁନ୍ଦରୀ ବୋଇଲ ଏହି ଅନୁରାଗ ସର୍ବଦା ମୋଠାରେ ରହୁ ।୫୫।

---

୭୨—'କ' ନୋହିବାରୁସି; ୭୩-'ଘ' ସୁନ୍ଦରୀ କାମ ଶର ହିଂ; ୭୪-'କ'. 'ଖ' ହସୁଥାଇ; ୭୫--'ଘ' କାମିର ଚେଷ୍ଟା; ୭୬-'ଗ' ଧନ; ୭୭-'ଖ' ପ୍ରୀତି ୭୮—'କ', 'ଖ' ବିଧାତା ଭୈରିମ୍ବରୁ କୃପାକଲେ ଭୋଗ୍ୟ; ୭୯ 'କ', 'ଖ'-ଏ; ୮୦—'କ', 'ଖ' ମୋତେ; ୮୧—'ଗ'-ତୁମ୍ଭ ପାଶେ; ୮୨-'କ' ରହିଯାଉଅଛି; ୮୩—'ଘ' କେସନେଣ୍ଣି, ୮୪ -'ଘ' ସେନେହ ତୁଟିବ ଯାଅ ଯା ବୋଲୁଲି ପାଖେ; ୮୫—'କ', 'ଖ' ଦିଅ ତୋଷେ ସବୁ, 'ଘ' ଦିଅ ତୁ କେଶରୁ ।

ଖୋଷାରୁ କୁସୁମ କାଢ଼ିଣ ସୁନ୍ଦରୀ ରସିକ କରରେ ଦେଇ
ଆଲିଙ୍ଗନ କରି ମୁଖେ ଚୁମ୍ବ ଦେଇ ମେଲାଣି ହୋଇ ଅଇଲ ।୫୬।

ଏମନ୍ତ ଯୁବାକୁ ମେଲାଣି ହୋଇଣ ଯୁବତୀ ପୁରକୁ ଗଲା
ରସିକ ତାକୁ ପାଦ କେତେ ପାଛୋଟ୍ଟି ନିଜ ମନ୍ଦିରକୁ ଗଲା ।୫୭।

ଏ ରୂପେ ପ୍ରତିଦିନ ନୃତୀ ସଦନେ ମେଳ ହୋଏ ଦୁହିଁଙ୍କରି
ରସିକ ପ୍ରତିଦିନ ଭେଟ ହେବାକୁ ବାଟେ ଥାଇ ଅନୁସରି ।୫୮।

ଏମନ୍ତେ କେତେ ଦିନେ ହେଲା ବାଳାର ଯଉବନ ପରବେଶ
ରସିକା ଅପରେ ଶୁଣିଣ ଭଣନ୍ତି ରାମଚନ୍ଦ୍ର ଏହୁ ରସ ।୫୯।



---

୮୬–୫୬ ପଦଟି 'କ' ଓ 'ଖ' ପୋଥିରେ ନାହିଁ । 'ଖ' ପୋଥିରେ ୨ୟ ପାଦର "ମୁଖେ............ଅଇଲ ।" ଅଂଶ ନଷ୍ଟ । 'ଘ' ପୋଥିରେ ୧ମ ପାଦ-"ଖୋଷାରୁ କାଢ଼ିଣ କୁସୁମ × × × ।" (ତାରକିତ ଅଂଶ ନଷ୍ଟ ।) । ୮୭–'ଖ' ତାହାଙ୍କୁ, ୮୮–'ଖ' ନବରକୁ ।

# ଚତୁର୍ଥ ଛାନ୍ଦ

(ରାଗ : ମାଳବ*)

ଯେଥୁ ଅନନ୍ତରେ[1] ଶୁଣ ରସିକ ନାଗର,
ଯଉବନ ପରବେଶ ହୋଇଲା ବାଳାର ।୧।

ଦିନୁ ଦିନୁ ସୁନ୍ଦର ଦିଶିଲା ସୁକୁମାରୀ,
ନିତମ୍ବନ ଘନ କୁଚ କୁମ୍ଭ ହେଲା ଭରି[2] ।୨।

ବିଧୁ ପରି ଦିଶିଲା ତା ବଦନ ରୁଚିର,
କୋକିଳରୁ ଜିଣି ବାଣୀ[3] ଶୁଭିଲା ମଧୁର[4] ।୩।

ଚମ୍ପା କେତକୀ ହାଟକ ପରି ତନୁ ଝଳି,
ମହୀରେ କି କେଳି କରେ ନିଶ୍ଚଳ ବିଜୁଳି ।୪।

ଘନ ତମାଳକୁ ତୁଚ୍ଛ କଲା କୁଚ ତାର[5],
ଗଜ[6] ମଗଳକୁ ଜିଣି[7] ଗମନ ମନ୍ଥର ।୫।

ଏମନ୍ତେ ରମଣୀ ବର କିଛି[8] ଦିନେ ତହିଁ,
କୁସୁମବତୀ ହୋଇଲା ସୁଧାକର ମୁହିଁ ।୬।

---

* 'କ' 'ଖ' ଓ 'ଘ' ପୋଥିରେ ରାଗ; ମାଳବ ବୋଲି ନିର୍ଦ୍ଦେଶ ଥିବା-ବେଳେ 'ଗ' ପୋଥିରେ ରାଗ—ମଙ୍ଗଳ ଗୁଜ୍ଜରୀ ବୋଲି ଉଲ୍ଲେଖ ଅଛି । 'ଗ' ଓ 'ଘ' ପୋଥିରେ ପ୍ରତ୍ୟେକ ପଦ ଶେଷରେ 'ହେ' 'ହେ' 'ରେ' 'ଗୋ' ଆଦି ଧ୍ୱନି ଥିବାବେଳେ 'କ' ଓ 'ଖ'ରେ ନାହିଁ ।

୧—'ଖ' ଅନ୍ତରେ; ୨—'ଖ' ନିତମ୍ବ ଘନ ଉଚ୍ଚ କୁମ୍ଭ ଭର ଭରି ଯେ, 'ଘ'—ନିତମ୍ବ ଘନ କୁଚକୁ କୁମ୍ଭହେଲା ସରି ଯେ; ୩-'ଖ' କୋକିଳ ବାଣୀରୁ ବାଣୀ; ୪—'ଘ' କୋକିଳ ବୀଣାରୁ ତାର ଶୁଭିଲା ସୁସ୍ୱର ଯେ, ୫—'ଘ' କଳଙ୍କ ଚକୋର; ୬—'କ' ସଜ; ୭—'ଘ' ଜାଣି; ୮—'ଖ' କିଛୁ, 'ଘ'—କେତେ ।

ତିନି ଦିନ[9] ଉଭାରେ[10] ସେ ଶୁଦ୍ଧ ସ୍ନାନ କରି[11]
ସୁବେଶ ହୋଇଲା ହେମ ଚମ୍ପକ[12] ଗଉରୀ ।୭।

ଯେ ବାରତା ପାଇକରି ରସିକ ନାଗର
ବୁଡ଼ିଗଲା ଆନନ୍ଦ[13] ସିନ୍ଧୁରେ ମନ ତାର[14] ।୮।

ତର ତର ହୋଇ ଦୂତୀ ମନ୍ଦିରେ ପ୍ରବେଶ
କହିଲା ଧନକୁ ମୋର କହିବୁ ସନ୍ଦେଶ ।୯।

ବାଳକ କାଳରୁ ଯେହି ସେବା କରିଥାଇ
ତାକୁ କି ଯେତେ ଭଛବେ ବାରଣ ନ ଦେଇ ।୧୦।

ବେଳୁଂ ଯେତେ[15] ଅଙ୍ଗୀକାର କରିଅଛି ହାଗ[16]
ଫଳରେ ତେତେ[17] ସେନେହ ନ ଦିଶିବ ପଗ[18] ।୧୧।

ଏତେ କହି ମୁଦ୍ରିକା ଗୋଟିଏ କରେ ଦେଇ
କୁମାରୀ ପାଶକୁ ତାକୁ ବେଳ ପଠିଆଇ ।୧୨।

ସେ ଯାଇ ତା ପାଶରେ ହୋଇଲା[19] ପରବେଶ
ମୁଦି ଦେଇଂ ଜଣାଇଲା ସକଳ ସନ୍ଦେଶ ।୧୩।

ଶୁଣି ଚତୁରୀ ରତନ ଉଛୁଙ୍କ ହୋଇଲା
ଗୁଡ଼ ଉତ୍ତର[20] ବାରତା ବୁଝାଇ କହିଲା ।୧୪।

ନିଶିରେ ତୋ ପୁରକୁ ମୁଂ[21] ଯିବି ଏକା ହୋଇ
ସେ ଆସିଣ ଅଗୁ ଥିବେ କହ[22] ବେଗେ ଯାଇ[23] ।୧୫।

---

୯ 'ଖ' ଦିନକ ; ୧୦-'ଘ' ଉଭାନ୍ତୁ, 'କ' ତିନିକ ଉପରେ ; ୧୧-'ଘ' ସାରି ; ୧୨-'କ' ଚିତୋକ, 'ଖ' ଚମ୍ପେକ ; ୧୩-'ଘ' ବର୍ଦ୍ଧିଗଲା ସାନନ୍ଦ ; ୧୪-'ଖ' ସାଗରେ ସୁଖ ତୀର ହେ ; ୧୫-'ଖ' ବେଳୁ ଯେଉଂ, 'ଗ' ବେଳ ଜାଣି, 'ଘ' ବେଳରେ ଯା ; ୧୬-'ଖ' କରିଛି ଯା ପଗ ; ୧୭-'ଖ' ତେଭେଂ, 'ଗ' କେତେ ; ୧୮-'ଗ' ସେନେହରେ ବସିବ ପରି ହେ ; ୧୯-'କ' ତାପାଶରେ ହେଲା, 'ଖ' ତାହାର ପାଶେ ହେଲ ; 'ଘ' ତାହା ପାଶରେ ହେଲ ; ୨୦ 'ଖ' ପ୍ରତି ଉତ୍ତର ; ୨୧-'ଖ' ମୁଂ ତୋ ପୁରକୁ ; ୨୨-'କ' କହି ; ୨୩-'ଗ' କହ ଯାଇ ତୁହି ଗୋ ।

ଏତେ କହି ଅଙ୍ଗଂଳା କୁସୁମ ତୋଳି ଆଣି
ଗୁଛି ଦୂତୀ କରେ ଦେଲା ରମା ଶିରୋମଣି ।୧୬।

ସେ ଯାଇ କୁମର ପାଶେ ପରବେଶ ହୋଇ
ସନ୍ଦେଶ କହିଲା ସେ କୁସୁମ କରେ ଦେଇ[24] ।୧୭।

ଶୁଣି ଯୁବାବର କାମେ ଆରତ ହୋଇଲା
ସହସ୍ରେକ ଯୁଗ ପରି ଦିବସ ମଣିଲା ।୧୮।

ଏ ସମଏ ଦିନେଶ ଉଦାଦ୍ରେ ଅସ୍ତ ବେଳେ
ତାରଗଣେ ଦୃଶ ହେଲେ[25] ଗଗନ ମଣ୍ଡଳେ ।୧୯।

କ୍ରମେ କ୍ରମେ ଶରଣୀ[26] ନିର୍ଜନ ହୋଇଗଲା
ସକଳ ସଂସାର ଅନ୍ଧକାର ଆଛାଦିଲା ।୨୦।

ଜାଣି ଯେ ସମୟ ଯୁବା ହୋଇଣ ଉଚ୍ଛୁକ[27]
ଦୂତୀ ସଦନରେ ଯାଇଂ ହୋଇଲା ପ୍ରବେଶ[28] ।୨୧।

ତରୁଣୀ ରତନ ହାଗ ପଥ ଅନୁସରି
ବୋଲଇ ଆସିବ କେତେବେଳେ ସୁକୁମାରୀ ।୨୨।

ତେତେବେଳେ ତନୁ ମୋର ହୋଇବ ଶୀତଳ
ଲିଭିଯିବ[29] ହୃଦୟରୁ[30] ବିରହ ଅନଳ ।୨୩।

ଦେଖିଲେ ତାହାକୁ ନେତ୍ରେ ଯିବି ମୁଂ ପାଛୋଟି
ମଣାଇଂ ଆଣିମି ଦେଇ ଶ୍ରୀକର ପଇଠି ।୨୪।

ଭେଟୁ ଗ୍ରଟୁ କହି ଦେବି ଚିବୁକରେ[31] କର
ଆଲିଙ୍ଗନ କରି ମୁଖ ଚୁମ୍ବିବି ସତ୍ୱର ।୨୫।

ଏମନ୍ତ ବିଗ୍ଭରି ହୃଦ[32] ହୋଏ ଦମି ଦମ
ବିରହ କାତରେ ଥରେ ଥରେ[33] ହୋଏ ଭ୍ରମ ।୨୬।

---

୨୪-'ଗ' କୁସୁମ ମାଳା ଦେଇ ଯେ ; ୨୫-'ଖ' ତାରଗଣେ ଉଦେ ହେଲେ ; ୨୬-'କ' ସରସୀ ; ୨୭ 'ଘ' ସୁବେଶ ; ୨୮-'ଖ' ହେଲା ପରବେଶ ; ୨୯-'କ' ଲିଭିଯିବ, 'ଘ' ଲିବିଗ୍ନିବ ; ୩୦-'ଗ' ହୃଦୟର ; ୩୧-'ଘ' ଚିବୁକରେ ଦେବି ; ୩୨-'ଘ' ବୁକୁ ; ୩୩-'ଘ' କ୍ଷଣେ କ୍ଷଣେ ।

ଏ ସମୟେ ସାଧୁତ କୁମାରୀ ଏ କକ୍ଷ୍ୟାରେ[୩୪]
ପ୍ରବେଶ ହୋଇଲା ଯାଇ[୩୫] ଦୂତୀ ସଦନରେ ।୨୭।

ଦେଖି ଯୁବାବର ଉଠି ବସାଇଲା କୋଳେ
ପ୍ରଥମେ ଭିଡ଼ିଲା ଭେଳେ[୩୬] ମଦନ[୩୭] ବିଭୋଳେ[୩୮] ।୨୮।

ଉତ୍ସୁକ ହୋଇଣ ବଦନରେ ଚୁମ୍ବ ଦେଇ
ଚିବୁକ ଧରି ବିନୟ ବଚନ କହଇ ।୨୯।

ପରାଣ ବାନ୍ଧବୀ ମୁଁ ତୋହର ପରିଗ୍ରର
ଉଚିତ ନୁହଇ ମୋତେ[୩୯] ଲଙ୍ଘି କରିବାର ।୩୦।

ବାଳକ[୪୦] କାଳରୁ ତୋତେ ଅଛି ଅନୁସରି
ରତି ଦେଇ ରଖ ଜୀବ କନକ[୪୧] ଗଉରୀ ।୩୧।

ଯେତେ କହି ଉରଜରୁ ବସନ ହରିଲ[୪୨]
ଭୁଜେ ଭିଡ଼ି ଗଣ୍ଡ ମଣ୍ଡଳରେ ଚୁମ୍ବ ଦେଲ ।୩୨।

ପାନ କଲା ମତ୍ତଭରେ ମଧୁର ଅଧର
ଷଡ଼ ରସ[୪୩] କାମେ ତାକୁ କରଇ କାତର ।୩୩।

ଉରଜରେ କରଜ ମୁନରେ କ୍ଷତ କଲା[୪୪]
ତା ବାହୁ ଯୁଗଳ ବାଳା ଗଳେ ଲମ୍ବାଇଲା ।୩୪।

କଟି ବସନକୁ ଦୂର କରନ୍ତେ ନାଗର
ଲଜ୍ଜ ବଶେ ବନିତା ଧଇଲା ଯୁବା କର ।୩୫।

ଯେଣୁ କହଇ ନାଗର[୪୫] ବିନୟ ଭାରତୀ
ମୁଁ ତୋହର ପରିଜନ ସାଧୁତ ଦୋହିତୀ ।୩୬।

---

୩୪-'କ' ଏକ ଅରେ, 'ଖ' ଏ କକ୍ଷାରେ 'ଗ' ଏ ବାସରେ, 'ଘ' ଏକ ସରେ ; ୩୫-'ଗ' ଆସି ; ୩୬-'ଘ' ପ୍ରେମେ ଭିଡ଼ି ଭୁଜରେ , ୩୭-'ଗ' ସଦନ ; ୩୮-'ଘ' ବିହ୍ୱଳେ ; ୩୯-'ଘ' ମୋରେ ; ୪୦-'କ' କାଳକ ; ୪୧-'ଗ' ଜୀବ ରଖ କନେକ ; ୪୨-'ଘ' ଫେଡ଼ିଲ ; ୪୩-'କ' ଷୋଡ଼ ରସ, 'ଗ' ଛଡ଼ ରସ ; ୪୪-'ଗ' ମୁନକୁ କ୍ଷତ ଦେଇ ; ୪୫-'ଗ' କହିଲ କୁମର, 'ଘ' କହଇ ରସିକ ।।

ଆଜ ଲଜ କରିବାର[୪୬] ନୋହଇ[୪୭] ଉଚିତ
ନ ଜାଣୁ କି ପ୍ରାଣଧନ[୪୮] ମୁଂ ତୋର ଯେମନ୍ତ ।୩୭।
ବାଞ୍ଛିତ କାଳରୁ କରିଅଛୁ[୪୯] ଅଙ୍ଗୀକାର
ସେ ମାନ କି ଏବେ ଆନ ହେବ ଗମାବର ।୩୮।
ଯେ ଯାହାଙ୍କୁ ସେବକ ଭାବରେ ଅନୁସରେ
ସେ କି ଧନ ଲଜକୁ କରଇ ତାହାଠାରେ ।୩୯।
ଏ ବଚନ ଶୁଣି ଯୁବା କର ଦେଲା ଛାଡ଼ି
ଯେଣୁ ରସିକ ରତନ ନୀବିବନ୍ଧ ଫେଡ଼ି ।୪୦।
ସୁରତ ରସେ ଉନତି[୫୦] କଲା ମନ ତୋଷେ
ଉରେ ଉର ଲଗାଇ ଭିଡ଼ିଲା ବାହୁ ପାଶେ ।୪୧।
ମଦନ ମଦରେ ପୁଣି ବଦନ ଚୁମ୍ବିଲା
ବନ୍ଧ ସଂଯୋଗରେ[୫୧] ପୁଣି କୋଳେ ବସାଇଲା ।୪୨।
କଣ୍ଠେ ତୁଣ୍ଡେ ରସନା ଘୃଞ୍ଜିଲା ମୁଖ ଧରି,
ଛାନେ[୫୨] ହଗଇଲା ସେ ମଦନେ ସୁକୁମାରୀ[୫୩] ।୪୩।
ଯେଣେ ବନ୍ଧ ବିଧାନକୁ ରସିକ ବିହିଲା
ଜାନୁକୁ ଜାନୁରେ ଛନ୍ଦି ଶୟନେ[୫୪] ରଖିଲା ।୪୪।
ଦଶନେ ବସନ ମଉଭରେ ଜଡ଼ି[୫୫]
ହୃଦରେ ଲଗାଇ ଅନୁରାଗ ବଶୁ[୫୬] ଭିଡ଼ି ।୪୫।
ଅତି ଉଚ୍ଛୁକରେ ରତି[୫୭] ସମର ସରିଲା
କୁମାରୀକି[୫୮] କୋଳେ ଘେନି କୁମର ବସିଲା ।୪୬।

---

୪୬-'ଘ' ହୋଇବାର; ୪୭-'ଖ' ନୁହଇ; ୪୮-'ଘ' ପ୍ରାଣବନ୍ଧୁ; ୪୯-'କ' କରିଅଛ; ୫୦-'ଘ' ରସ ଲୋଚନ; ୫୧-'ଖ' ସଙ୍ଗେ ପରେ; ୫୨-'ଖ' ଘ୍ୟାନ; ୫୩-'ଘ' ସୁଖୁମାରୀ ଯେ; ୫୪-'ଗ' ଛନ୍ଦି ସେ ସତୁରେ; ୫୫-'ଘ' ଭିଡ଼ି; ୫୬-'କ' ଅନୁ ନୁରସ ବଶ; 'ଖ' ଅନୁରସ ବଶ; ୫୭-'କ' ରିତ; ୫୮-'ଖ' ସୁକୁମାରୀକି ।

ମେଳଣ ହେବାକୁ ତର ତର ହେଲା ଗୋରୀ
ବିନୟ[୫୯] କହନ୍ତି ଯୁବା କରେ କର ଧରି ।୪୭।
ପରଣ ବାନ୍ଧବୀ ବାଳକାଳୁ ମୁହିଂ ତୋତେ
ଅନୁସରି ଥିଲୁ[୬୦] ଫଳ ଲଭିଲି[୬୧] ଯୁଗତେ ।୪୮।
ଯେବେ ଜଣାଉଛି ଯେତେ ପ୍ରତି ପାଳିଥିବୁ
ଜୀବଧନ ମତେ[୬୨] ତୁ ନିରାଶ ନ କରିବୁ ।୪୯।
ଯେତେ ଅପରାଧ କଲେ ନ ଘେନିମୁ[୬୩] ଗୋରୀ
ସେବକ ପିନା ମୁଂ ତୋର ଥିବୁ ହେତୁକରି ।୫୦।
ବାଟେ ଭେଟ ହେଲେ ଗ୍ଲହୁଂଥିବୁ ଥରେ ଥରେ
କଥା କହି ଯାଉଥିବୁ ଏକାନ୍ତ ସ୍ଥାନରେ ।୫୧।
ପିତା ପୁରେ ଥିବା ଯାକ ଦେବୁ ଅଙ୍ଗ ସଙ୍ଗ
ନିରାଶ କରିବୁ ଯେବେ ଦହିବ ଅନଙ୍ଗ ।୫୨।
ପତି ସଦନକୁ ଗଲେ ମନେ କରୁଥିବୁ[୬୪]
ସନ୍ଦେଶ ମୁଂ ଦେଲେ ପ୍ରତି ଉତ୍ତର ତୁ ଦେବୁ ।୫୩।
ଯିବୁ ଯେ[୬୫] ଆସିବୁ ଦୁଇ ଚାରି ମାସେ ଥରେ
ମୋରେ ଦୟା ଥିଲେଣ ଆସିବୁ ପିତାପୁରେ ।୫୪।
ଦଇବ ଯୋଗରେ ତୋ[୬୬] ପୁରକୁ ଗଲେ ମୁହିଂ
ଭେଟ ମାତ୍ର ମୋତେ ଦେବୁ ସୁଧାକର ମୁହଂୀ ।୫୫।
ଯେତେ କହି ରସିକ ରତନ ଚୁମ୍ବି ମୁଖ
କ୍ଷଣକେ ହରିଲା ଚିରକାଳ ମହାଦୁଃଖ[୬୭] ।୫୬।

୫୯-'ଖ' ବିନୟେ; ୬୦—'ଗ' ଥିଲି ୬୧—'ଖ ଲଭିଲୁ, ୬୨—'ଖ' ମୋତେ, ୬୩-'ଖ', 'ଘ' ନ ଘେନିବୁ; ୬୪-'ଖ' କରିଥିବୁ; ୬୫—'କ' ଯେବେ; ୬୬-'କ'-ତା; ୬୭-'ଗ' ହୃଦ ଦୁଃଖ, 'ଘ'-ବହୁ ଦୁଃଖ ।

ଚତୁରୀ ରତନ କର ଧରି ଉଭା ହେଳ
ମେଲାଣି ହୋଇଣ ନିଜ ପୁରକୁ ଚଳିଲ ।୫୭।
ରସିକ ରତନ ଗ୍ୱଟୁ ଯେତେକ କହିଲ[୬୮]
ଲଜେ ସିଉକାର କରି ଉତ୍ତରୁ ନଦେଲ ।୫୮।
ପାଦ କେତେ ମାତ୍ର ଗଲା ଋସିକ ପାଛୋଟି
ଅନୁରାଗ ବଶୁଂ ବାଳୀ ରହିଂଲ ପାଳଟି ।୫୯।
ତହୁଂ ବେନି ଜନେ ନିଜ ପୁରେ[୬୯] ପରବେଶ
ଭଣେ ରାମଚନ୍ଦ୍ର ପଟ୍ଟନାଏକ ଏ ରସ ।୬୦।



---

୬୮—'ଘ' ବିହିଲ; ୬୯—'ଘ' ବେଣିଂ ପୁରେ ।

# ପଞ୍ଚମ ଛାନ୍ଦ

( ରାଗ : ଚିନ୍ତା ଦେଶାକ୍ଷ )

ଯେଥୁ ଅନନ୍ତରେ ଶୁଣ[1] ଅପୂର୍ବ ରସ
କୁମାରୀ କୁମାର ଭାବେ ହୋଇ ହରଷ[2] ।୧।

ଦିନୁ ଦିନୁ ଯହୁଁ ଅନୁରାଗ ବଢ଼ିଲା
ଯୁବତୀକି ପାଇ ଯୁବା ସବୁ ଛାଡ଼ିଲା ।୨।

ବିଷୟମାନଙ୍କୁ ବିଷ ପରାଯେ ମଣି
ପ୍ରତୁଷରେ[3] ଅନୁସରେ ତା ମନ ଜାଣି ।୩।

ନିରାଶ କରଇ ନାହିଁ ସାଧୁ ଦୋହିତା
ଯୁବା ଭାବ ପାଇ ମନୁ ତେଜିଲା ଚିନ୍ତା ।୪।

ରଜନୀରେ ଦୂତୀ ସଦନକୁ ଆସଇ
ଭାମିଣୀ ଯୁବା ସଙ୍ଗ[4] ଅନୁଗତ ହୁଅଇ ।୫।

ରତି ଶେଷେ ପରସ୍ପରେ[5] ହୋଏ ମେଲାଣି
ପୁରକୁ ଆସଇ ଯେକା ରମଣୀ ମଣି ।୬।

ନିଶିରେ କାହାରି ନେତ୍ରେ ନିଦ୍ରା ନ ଆସେ
ଦୁହିଁଙ୍କର ମନ ରହେ ଦୁହିଁଙ୍କ ପାଶେ ।୭।

ଯେମନ୍ତେ ପୀରତି କେହୁ ମୁଖେ କହିବ
ଏକକୁ ନ ଦେଖି ଆର ଜୀବନ ଯିବ ।୮।

ଯୁବା ଜୀବନରେ ଛାଡ଼ି ପାରିବ ନାହିଁ
ଯେହି ମତି ମନେ କଲା ଚନ୍ଦ୍ରମା ମୁହିଁ ।୯।

---

୧-'ଘ' ଯେଥୁ ଅନ୍ତେ ଶୁଣ ଜନେ ; ୨-'ଘ' ହୋଇ [illegible] 'ଙ' [illegible] ପ୍ରତିସରେ, 'ଖ' ପ୍ରତ୍ୟୁଷରେ ; ୪-'ଖ' ସଙ୍ଗ, 'ଗ' [illegible] ; ୫-'ଖ' ପରସ୍ପର ।

ଯେହି ମତି ତହୁଂ କେତେ[6] ଦିବସ ଗଲା
କୁମାରୀର ଶାଶୁଘର ଯିବା ପଡିଲା ।୧୦।

କାନ୍ତ ସାନ ଭ୍ରାତ ତାକୁ ଆସିଲା ନେଇ
ପରବେଶ ପୁରେ ବାସ ଭୂଷଣ ଦେଇ ।୧୧।

ମୁଡ଼ିକାର[7] ସଦନରେ ଅତି ଚଞ୍ଚଳ
ଜାଣି କୁମାରୀ ରତନ[8] ହେଲା ଆକୁଳ ।୧୨।

ଛାଡ଼ିବାକୁ ଯୁବାକୁ ତା ମାନସ[9] ନାହିଁ
ବିରହରେ ନିଜ ଜନନୀକି ନିନ୍ଦଇ ।୧୩।

କୁଳ ମହତକୁ ଯେବେ[10] ଇର୍ଘି ନ ପାରେ
କେବଳ ଜୀବନ ରହିଅଛି[11] ଦେହରେ ।୧୪।

ଦେଖାଦେଖି ହେବାକୁ ସଙ୍କଟ ପଡ଼ିଲା
ଯେଣୁ ବାଳା ଅଧିକେ ଆକୁଳ ହୋଇଲା ।୧୫।

ଯେ ବାରଣ ଦୂତୀ ମୁଖୁ ଶୁଣି କୁମର
ବୁଡ଼ିଗଲା କାମ ଜଳେ ଜ୍ଞାନ ତାହାର ।୧୬।

ଘଡ଼ିକ ଉତାରେ ପୁଣି ଚେତନା ପାଇ
ଦୂତୀକି କହଇ ବାଣୀ ବିନୟ ହୋଇ ।୧୭।

ପରଣ ବାନ୍ଧବୀ ସତେ ଛାଡ଼ିବୁ ମୋତେ
ଯେତେ ଦିନ ଯାଏ ତ ନଥିଲା ପରତେ ।୧୮।

କେଉଂ ଦୁଦଶାରୁ ଏତେ ଦଣ୍ଡ ପଡ଼ୁଛି[12]
ଜୀବନେ ମୁଂ ଥାଉ ଧନ ମୋତେ ଛାଡ଼ୁଛି ।୧୯।

କର ଧରି ମାତ୍ର ତୋତେ[13] କହୁଛି ଏତେ
ଭେଟାଇବୁ ଆଣି ପ୍ରାଣଧନକୁ[14] ମତେ ।୨୦।

---

୬-'ଖ' ମତି ତହିଁ କେତେ, 'ଗ' ମତି କେତେ ; ୭-'କ' ଚୁଡ଼ିକାରେ; ୮-'ଘ' କୁମାର ରତନ ; ୯-'କ' ଯୁବା ତାକୁ ଟା ମାନସ, 'ଖ' ଯୁବା ତାକୁ ମାନସି ; ୧୦-'କ' ଯେବେଶ, 'ଘ' ଯେକା ; ୧୧-'ଘ' ଜୀବନ ଅଛି ନିଜ ; ୧୨-'କ', 'ଖ' ପଡ଼ିଛି ; ୧୩-'ଗ' ତତେ ମାତ୍ର ; ୧୪-'ଘ' ପ୍ରାଣବନ୍ଧୁକୁ ।

ଶୁଣି ଦୂତୀ ବୋଲେ ଏତ ଅତି ସଙ୍କଟ
ଜନନୀ ଜନକ ତାକୁ କଲେ ଆକଟ ।୨୧।

ଆଜ ରାତ୍ର ଶେଷ ହେଲେ କାଲି ପ୍ରଭାତେ
କାନ୍ତ ସଦନକୁ ବାଳୀ ଯିବ ଯୁଗତେ ।୨୨।

ଗହଳ ଅବା ତା ପୁରେ ବନ୍ଧୁ ବାନ୍ଧବ
ବର ଭାଥ ଆସିଅଛି ଭେଁଟ ନୋହିବ ।୨୩।

କି କରି ଆଜ ତାହାକୁ କହିବି ମୁହିଂ
ଆସିବାକୁ ଅବକାଶ ହୋଇବ ନାହିଂ ।୨୪।

ଏହା ଶୁଣି ରସିକ ତା ପାଦ ଧଇଲା
କିଛି[15] ଧନ ଦେଇଣ ବିନୟ କହିଲା ।୨୫।

ଥରେ ମାତ୍ର ତାକୁ ମୋର ସନ୍ଦେଶ କହ
ନ ଆସିଲେ କାମ ମୋତେ କରିବ ଦହ[16] ।୨୬।

ଭେଟ ନ ଦେଇଣ ଗଲେ ଖାଇବି ବିଷ
କି କହିବ ମତେ[17] ସେ ଶୁଣିବି[18] ସନ୍ଦେଶ ।୨୭।

ଶୁଣି ଦୂତୀ ଏବେ ତାର ପୁରକୁ ଗଲା
ଦଇବ ଯୋଗେ ହାରକୁ ଯେକା ଭେଟିଲା[19] ।୨୮।

ଯୁବାବର ବିନୟ ତା ପାଶରେ କହି
ବୋଇଲା ତୁ ଶୁଣ[20] ଆଗୋ ଚନ୍ଦ୍ରମା ମୁହିଂ ।୨୯।

ବିହି ବଶେ ଯାଉଅଛୁ କାନ୍ତ ସଦନ
କାହାବେଳେ ଏହୁ କଥା ହୋଇବ ଆନ ।୩୦।

ତଥାପି ଯୁବାକୁ ଥାଉ ଭେଟ ନଦେଲେ
ପୁରୁଷ ହତ୍ୟା ତୁ ଅରିଜିବୁ ମହୀରେ ।୩୧।

---

୧୫—'ଖ' କିଛୁ; ୧୬—'ଖ' 'ଘ' ଦାହ, ୧୭—'ଗ' ସତେ, ୧୮—'ଘ' କି କହି ଯିବି ସେ ମୋତେ ଶୁଣି; ୧୯—'ଗ' ହାରକୁ କାନ୍ତ ଦହିଲା; 'ଘ' ଲୋକେ ବିରହେ ଭେଟିଲା; ୨୦—'ଗ' ଶୁଣ ତୁ ।

ଏହା ଶୁଣି ବାଳା ହେଲା ଉଛନ ଚିତ୍ତ
କି କରିବି ଦୂତୀ ମୋର ନାହିଁ ଆୟତ୍ତ ।୩୨।

ତୋର ସଦନକୁ ଆଜ ଯାଇ ନୋହିବ
ଭେଟ ହେଲେ ଆମ୍ଭ ରମ୍ଭା ବନରେ ହେବ ।୩୩।

ଉଚ୍ଛୁର ହୋଇଲେ ହେବ ଅଣ ଆୟତ୍ତ
କହ ଯାଇ ଏଠାକୁ ଆସିବେ ତୁରିତ ।୩୪।

ଶୁଣି ଦୂତୀ ଯୁବାକୁ ସନ୍ଦେଶ କହିଲା
ଶୁଣି ଯୁବା ବେଗେ ରମ୍ଭା ବନକୁ ଗଲା ।୩୫।

ସଙ୍କେତ କହିଲା ବାଳୀ ଯେଉଁ ସ୍ଥାନକୁ[21]
ରମ୍ଭାବନେ[22] ରହି ପଥ ହେଜେ ବାଳାକୁ[23] ।୩୬।

ଗୁଡ଼କାଉ ବାଳୀ ମନେ ଅଛି ସେ କଥା
ଘେନିଅଛି ଯେଣୁ ଯୁବା ହୃଦୟ ବ୍ୟଥା ।୩୭।

ସଙ୍କେତ ସ୍ଥାନରେ ଯାଇ ହେଲା ପ୍ରବେଶ
ଦେଖିଣ ପାଛୋଟି ଆସି[24] ନେଲା ପୁରୁଷ ।୩୮।

ବସି ବସାଇଲା ଆଣି ଜାନୁ ଉପରେ
କମ୍ପୁଅଛି ତନୁ ତା ବିରହ କାତରେ ।୩୯।

ଆଲିଙ୍ଗନ କରି ମୁଖେ ଚୁମ୍ବନ ଦେଇ
ଚିବୁକ ଧରି ବିନୟ ବାଣୀ କହଇ ।୪୦।

ପରାଣ ବାନ୍ଧବୀ ସତେ ଛାଡ଼ିବୁ[25] ମୋତେ
ତୋ ବିନୁ ଜୀବନ ମୁଁ ରଖିବି କେମନ୍ତେ ।୪୧।

ତୋତେ ନ ଦେଖିଲେ ଯୁଗ ହୋଇ[26] ଦିବସ
ବୁଦ୍ଧି ଧ୍ୱଂସ ହୋଇ ଦିଶେ ଅନ୍ଧାର ଦିଶ ।୪୨।

---

୨୧—'ଘ' କଥାକୁ; ୨୨—'ଘ'*ର ଭବନେ; ୨୩—'ଖ' ତାହାକୁ
୨୪—'ଘ' ପାଛୋଟି ଦେଖିଣ ଆସି; ୨୫-'ଗ' ଛାଡ଼ିଯିବ; ୨୬—'ଖ' ହୁଏ ।

ଯଉ ଦିନୁ[୨୭] ଧନ ପୁରୁ ନୋହୁ ବାହାର
କଷ୍ଟେ ଅନକୂଳ କରେ[୨୮] ଜୀବନ ମୋର ।୪୩।

ପାଶେ ଥାଉ ଥାଉ ହୋଏ ଯେତେ[୨୯] ଚରିତ[୩୦]
ତୁ ପୁଣି ଛାଡ଼ିବୁ ମୋତେ ଥିବି ଜୀବିତ ।୪୪।

କି କରିବି ପ୍ରାଣବନ୍ଧୁ ଉପାୟ କହ
କେମନ୍ତେ ତୋ ବିନୁ ମୁହିଂ ରଖିବି ଦେହ ।୪୫।

କାହାକୁ ପଥରେ ଅନୁସରିବି ଯେବେ
କେ ମୋତେ କହିବ ବାଣୀ ବିନୟ ଭବେ ।୪୬।

କାହାକୁ ଉଠିଣ ମୁହିଂ ଯିବି ପାଛୋଟି
ଅନୁରାଗେ ଗ୍ରହୁଂଥିବ କେହୁ ପାଲଟି ।୪୭।

କି କରିବି[୩୧] କହ ପ୍ରାଣବାନ୍ଧବୀ ହାଗ
ତୋହ ଯିବା ଶୁଣି[୩୨] ପ୍ରାଣ[୩୩] ହେଉଛି ଭଗ ।୪୮।

କେସନେ ବଞ୍ଚିବି ମୁହିଂ ତୋ ସଙ୍ଗ ବିନୁ[୩୪]
ଅବର୍ଣ୍ଣ ନାଶିବ ମୋତେ କୁସୁମ ଧନୁ ।୪୯।

କେତେ ପରକାରେ ଧନ ଭଜିଲି ତତେ[୩୫]
କେମନ୍ତେ ଚନ୍ଦ୍ରବଦନୀ ମୁର୍ଛିଲୁ[୩୬] ମୋତେ ।୫୦।

ଯେତେ କହି ରସିକ ତା ଚରଣ ଧରି
ଶରଣ ପଶୁଛି ମୋତେ ରଖରେ ଗୋରୀ ।୫୧।

ଯେବେ ଯିବୁ ଧନ ମୋତେ ଭୁଲିବୁ ନାହିଂ ।
ଶଙ୍ଖୋଳିବୁ ଥରେ ଥରେ ଚନ୍ଦ୍ରମାମୁହଂ[୩୭] ।୫୨।

---

୨୭-'ଗ' ଯେଉଂ ଦିନ, 'ଘ' ଯଉ ଦିନ; ୨୮—'ଗ' କଷ୍ଟରେ ଆକୁଳ କରେ; ୨୯-'ଘ' ଯେତେ; ୩୦—'କ' ଚରିତ୍ର; ୩୧—'ଘ' କି କହିବି; ୩୨-'ଖ' ସକାଶୁଣି; ୩୩-'ଗ' ତନୁ; ୩୪-'କ' ତୋଷ ବିନୁ; 'ଖ' ତୋହର ବିନୁ; ୩୫ 'କ'-ଭଜିଲି ମତେ; 'ଖ' ଭଜିଲୁ ମତେ; ୩୬-'ଖ' ମୁର୍ଛିଲୁ, 'ଗ' ମୁର୍ଚ୍ଛିବୁ; ୩୭-'ଘ' କମଳ ମୁହଂ ।

ଜାଣି ଚତୁରୀ ରତନ କହଇ ବାଣୀ
କାହିଂକି ବିମନ ମନେ ଧରିଛ[୩୮] ପୁଣି ।୫୩।

ତୁମ୍ଭ ପାଶେ ପ୍ରାଣ ରଖି[୩୯] ଯିବି ମୋହର
ଦେହ ଘେନି ଯାଉଅଛି ଶଶୁର ଘର ।୫୪।

ଜୀବନରେ ମୁହିଁ[୪୦] ନପାରିବି ତୁମ୍ଭକୁ
ଏକଥା ପ୍ରାଣବଲ୍ଲଭ ଘେନ ମନକୁ ।୫୫।

ନ ଭାବିବ ମୋହ ପାଇଂ ନାଗରବର
ତୁମ୍ଭପାଇଁ ଆସୁଥିବି ଜନନୀ ପୁର ।୫୬।

ଶେଷ ଉପୁଜାଉଥିବି ଶଶୁର ଘରେ
ମାସକେ ଆସିବି ଥରେ[୪୧] ତୁମ୍ଭ ଆଗରେ[୪୨] ।୫୭।

ଏହା ଶୁଣି ଯୁବା ବୋଲେ[୪୩] ନୋହିବ ପର
ପାସୋରିଣ ଥାଉ ନିକି ତରୁଣୀ ହାର ।୫୮।

ପତି ସଙ୍ଗ ପାଇଣ ତୁ ହୋଇବୁ ଭୋଳ
ମୋ ପ୍ରୀତି କିମ୍ପା ସଜନୀ ଥିବ ହୃଦର[୪୪] ।୫୯।

ଯେତେ କହି ଯୁବାବର ଅଧୀର[୪୫] ହୋଇ
ଭୁଜେ ଭିଡ଼ି ମୁଖେ ତାର ଚୁମ୍ବନ ଦେଇ ।୬୦।

ଛାଡ଼ିବାକୁ ନ ବଳଇ କାହାର[୪୬] ମନ
ଦଇବ ବଶରେ ହୋଉ[୪୭] ଅଛନ୍ତି ଭିନ୍ନ ।୬୧।

---

୩୮-'ଖ', 'ଘ' ଧରିଛୁ; ୩୯-'ଘ' ତୁମ୍ଭ ପାଖେ ମନ ରଖି; ୪୦-'ଖ' ମୁହିଁ, ୪୧-'ଗ' ଥରେ ଆସିବି; ୪୨-'ଖ' ଆଶାରେ; ୪୩-'ଗ' କହେ; ୪୪-୫୯ ପଦ ପରେ 'ଗ' ପୋଥିରେ ଅତିରିକ୍ତ ପଦ-"ଯେତେ କହି ରସିକ ତା ଚରଣ ଧରି । ପଡ଼ଇଣ ଯାଉଛି ମୋର ରଖରେ ଗୋରୀ । ୬୦ ସମ୍ପାଦିତ ୬୦ଶ ପଦ 'ଖ'-ପୋଥିରେ ୬୧ପଦ ରୂପେ ଅଛି । ୪୫-'ଖ' ଅସ୍ଥିର; ୪୬-'ଖ'-କାହାରି; 'ଗ' ଦୁହିଂଙ୍କ ; ୪୭-'ଖ' ହେଉ ।

କେହି କାହାକୁ ହିଁ ଭଷା[୪୮] କହିଁ ନପାରେ
ବେନି ଜନ ତନୁ ଜମେ କାମ କାତରେ ।୬୨।

ମେଲାଣି ହେବାକୁ ବୁଦ୍ଧି ଦିଶଇ ନାହିଁ
ଯୁବାକୁ କହଇ ବାଣୀ କମଳ ମୁହିଁ[୪୯] ।୬୩।

ରସିକ ରତନ ଆଉ ନୁହ କାତର
ଏ ଦେହରେ ଅଧିକାର ଅଟେ ତୁମ୍ଭର ।୬୪।

ଯାଉଛି ପୁରକୁ ଆଉ ରହିଁ ନୋହିବ
ଉଛୁର ହୋଇଲେ କଥା ପ୍ରଘଟ ହେବ ।୬୫।

ଏତେ କହି ବାଳୀ ନିଜ ସଦନେ ଗଲା
ମେଲାଣି ହୋଇ ସେଠାରୁ ଯୁବା ରହିଲା ।୬୬।

ଆସିବାକୁ ପୁରକୁ ନ ଚଳେ ଚରଣ
କି ଅବା ତାହାକୁ ଉପସ୍ଥିତ ମରଣ ।୬୭।

କଷ୍ଟେ କଷ୍ଟେ ସଦନରେ ପ୍ରବେଶ ହେଲା
କୁମାରୀକି[୫୦] ଭବି ଭବି[୫୧] ଦିନ ସାରିଲା ।୬୮।

ପ୍ରଭାତରୁ[୫୨] ଗୁଡ଼କାର ପୁରେ ଚହଳ
କୁମାରୀକି କରାଇଲେ ସୁ ଅନୁକୂଳ ।୬୯।

ଜ୍ଞାତି ଲୋକ ମେଳ ହୋଇ ସଙ୍ଗତେ ଗଲେ
ରହିବା ଲୋକେ ମେଲାଣି ହୋଇ ରହିଲେ ।୭୦।

ରସିକ ରତନ ଅନୁସରି ପଥରେ
କେବେ ହେଁ ଚତୁରୀ ତାକୁ ଭୁଲିଁ ନପାରେ ।୭୧।

---

୪୮-'ଗ' କାହାକୁ ଦୁଭଷା ; ୪୯-'ଘ' ଚନ୍ଦମା ମୁହାଁ ; [illegible]-'ଗ' ପୋଥିରେ ୬୩ ଓ ୬୪ ପଦ ନାହିଁ ; ୫୦-'କ', 'ଖ' କୁମାରୀ ତା ; ୫୧-'ଖ' ଭବ ଭବି ; ୫୨-'ଘ' ପ୍ରଭାତରେ ।

କୋଣେ ପରିଯନ୍ତେ ଯୁବା ଗଲା ପାଛୋଟି
ଉସର[୫୩] ପାଇଣ ବାଛୀ ଗ୍ରହେଂ ପାଇଟି[୫୪] ।୧୭୨।

ନୟନେ ମେଲଣି କରି ଯୁବାବରକୁ
ଆକୁଳ ହୋଇଣ ଗଲା କାନ୍ତ ପୁରକୁ ।୧୭୩।

ଯୁବାବର ନିଜ ସଦନରେ ପ୍ରବେଶ[୫୫]
ଦୁଗା[୫୬] ଚିନ୍ତି ରାମଚନ୍ଦ୍ର ଭଣେ ଏ ରସ ।୧୭୪।



୫୩-'କ', 'ଖ' ଅସର ୫୪-'ଗ' ଲେଉଟି ; ୫୫-'ଗ' ପରବେଶ ;
୫୬-'ଖ' ଦୁର୍ଗା ।

# ଷଷ୍ଠ ଛାନ୍ଦ

( ରାଗ : ଶ୍ଳେଖା )

ଯେଥି ଅନନ୍ତରେ ରସ ଶୁଣ ରସିକ ପୁରୁଷ
କୁମରଙ୍କୁ ଛାଡ଼ି ଯହୁଁ[1] ଗଲା କୁମାରୀ
ଲେଉଟି ଆସିଣ ପୁରେ ପ୍ରବେଶ ହେଲା ସତ୍ୱରେ
ଏକାନ୍ତ ସ୍ଥାନରେ ବସି ବିଳାପ କରି,
ବାମ କର ଗଣ୍ଡେ ନିବେଶି
ବୋଲେ ଆହା ବନ୍ଧୁ[2] ମୋର କୁଟିଳ କେଶୀ ।୧।

କି ଘେନି ମନରେ ଗୋରୀ ଛାଡ଼ିଗଲୁ ଏକା କରି
ପ୍ରାଣରୁ ଅଧିକ କରିଥିଲୁ ଯେ ମୋତେ
କି କରିବି ତୋହ ବିନୁ ବିନ୍ଧିଛି[3] କୁସୁମ ଧନୁ
ସକଳ ଅନ୍ଧାର ମୋତେ ହେଲା ଜଗତେ,
ତୋ ବଦନ ରଜନୀକର
ଦେଖାଇଣ ହର ମୋର କାମ[4] ତିମିର[5] ।୨।

ଚତୁରୀ ରତନ ହାର ତୁ ମୋର ନୟନ ତାର
ହୃଦୟ ଚନ୍ଦନ ଶିର କୁସୁମ ଗର୍ଭ
ଭଜିଥିଲି ଭାବେ ତୋତେ ତୁ ମୋତେ ଛାଡ଼ି[6] କେମନ୍ତେ
ହୀନ ଗୁଆଁର ଜନକୁ ହୋଇଲୁ[7] ବିଭା,
ହୃଦେ ବେଢ଼ କଲୁ[8] କପଟ
ବଜ୍ର ହୁଁ ହୃଦୟ ତୋର ହୋଇଲା ଆଣ୍ଟ ।୩।

---

୧-'ଗ' ଯହୁଁ ଛାଡ଼ି ; ୨-'ଗ' ବନ୍ଧୁ ଆହା ; ୩-'ଗ' ବିନ୍ଧିବ 'ଘ' ବହୁଛି ; ୪-'କ', 'ଖ' ଯେକା ; ୫-'ଘ' ତିମିର ; ୬-'ଗ' ମତେ ଛାଡ଼ିଲୁ' ; ୭-'ଗ' ହେଲୁରେ ; ୮-'ଗ' କଲୁ ।

ଯେବେ ଯେହା ଥିଲା ଚିତ୍ତେ　　କିମ୍ପାଇ ମୋହ ସଙ୍ଗତେ
ଯେତେ ରୂପେ[୯] ପ୍ରାଣବନ୍ଧୁ[୧୦] ପୀରତି କଲୁ
ଯେବେ ଛଡ଼ାଇଣ ଆଶ　　କଲୁ ବହୁତ ନିରଶ
ଆପେ ନ ବିନାଶି କାମ ମୁଖରେ ଦେଲୁ,
କିଛି ଦୋଷ ନାହିଁ ମୋହର
ନ ବୁଝିଣ ଗଲୁ ଛାଡ଼ି[୧୧] ରମଣୀବର ।୪।

ଆରେ ଗ୍ଳୁ ଚମ୍ପା[୧୨] ଗୋରୀ　　ଥିଲି ତୋତେ ଅନୁସୋରି
ତୋର ଭଷା[୧୩] ଶିରଗତ କରିଣ ଥିଲି[୧୪]
ଅନୁସୋରି ଥାଇ ପଛେ　　ଦେଖିବାକୁ ନେତ୍ର ଇଚ୍ଛେ
ମୋ ଆଗେ ଚନ୍ଦ୍ରବଦନୀ ନ ଯାଉଁ ଚ୍ଳି,
ବୋଇଲି ମୁଁ ଲଜ୍ୟା ନ କର
ତୋ ଭେଟକୁ ଜଗି ମୁହିଁ ଅଛି ଏଠାର ।୫।

ନ ଦେଖିଲେ କ୍ଷଣେ ମୁଖ　　ମଣଇଁ ଅନେକ ଦୁଃଖ
ଅନ୍ନ ବିଷ ହୋଏ କ୍ଷଣେ ଅନ୍ତର ହେଲେ
ଯେତେ ରୂପେ ସେବା ମୋର　　କପଟ ସଖୀ ନ କର
ପରଛାରେ ଗ୍ଳିଯାଅ ଗଜ ଦାଣ୍ଡରେ,
ଦେଖିଣ ମୁଁ ହେବି ଉଲ୍ଲାସ
ଏ ଭଷା ଶୁଣିଣ ମୋର ହୋଇଲୁ ତୋଷ ।୬।

ଶୀତ ଗ୍ରୀଷ୍ମ ବରଷାରେ　　ଦିବସ ନିଶି ଅନ୍ଧାରେ
ଅନୁଗତ ହୋଇ ତୋତେ ପଗଣ ପ୍ରିୟା
ନ ଘେନିଲୁ[୧୫] କେଶେ ତାହା　　ଯାଣୁ ମୋର ନାହିଁ ସାହା
କାମିନୀ ହୋଇଲେ ନିକି ଯେତେ ନିର୍ଦ୍ଦୟା,

---

୯-'ଘ' ତେତେ ରୂପେ ; ୧୦-'କ' ପ୍ରୀତିବନ୍ଧୁ ; ୧୧-'ଗ' ଛାଡ଼ିଗଲୁ ; ୧୨-'ଙ', 'ଖ' ଚମ୍ପାଗ୍ଳୁ ; ୧୩-'ଗ', 'ଘ' ତୋ ଭଷା ମୋ ; ୧୪ 'ଗ' କରି ଯେ ଥିଲି ; ୧୫-'ଗ' କି ଘେନିଲୁ ନ

ଛାଡ଼ିବାର ଉଚିତ ନୋହି
ବାଳକ କାଳରୁ ତୋର ସେବକ ମୁହିଂ ।୭।

ତୁ ତ ଜାଣିଅଛୁ ଗୋରୀ ଯେତେ ରୂପେ ଅନୁସୋରି
ସରଣୀ ସରସୀ ସରୋବର କୂଳରେ
ମନକୁ ମନାଇଂ ତୋର କହଇ ଗ୍ଧଟୁଁ ଉତ୍ତର
ତେଣୁ କରି ଧନ ଦୟା କଲୁ ମୋଠାରେ,
ଯେତେ ରୂପେ ଗ୍ଧଟୁ ବିଧାନ
ତୋ ମନ ଜାଣଇଂ[16] ମୁହିଂ ଜାଣୁ ମୋ ମନ ।୮।

ଯେଉଂ ଦିନ ବିଭଘର ବର୍ଦ୍ଧିଲ ରମଣୀବର
ସାତ ଦିନ ଯାଏ ତୋତେ ଦେଖିଲି ନାହିଂ
ଅନ୍ଧାର ଦିଶିଲା ଦିଗ ଛାଡ଼ିଲି ସକଳ ଭୋଗ
କାମ କରି ବଇରଗ ଦେଲକ ବିହି[17]
ତହୁଂ ଦୁଇ ଦିନ ଉତ୍ତାରେ
ଭେଟ ହେଲୁ ଧନ ଦୟା କରି[18] ମୋଠାରେ ।୯।

ଯେତେକ ହୁଂ[19] ଯେତେ ଦୁଃଖୀ ହୁଅଇ ରେ[20] ଚନ୍ଦ୍ରମୁଖୀ
ପାଶେ ଥାଉ ଥାଉ ଦିନେ ଅନ୍ତର ହେଲେ
ଯେବେ କ୍ଷୀର[21] ନଦୀ ଦୂର କରିଗଲୁ ଗମାବର
କାହାକୁ କହିବି ଦୁଃଖ ମାର ମାଇଲେ,
ଅତି ଦୟାବନ୍ତ ହୋଇଣ
ହୃଦୟକୁ ବନ୍ଧୁ ଯେବେ[22] କଲୁ ପାଷାଣ[23] ।୧୦।

---

୧୬–'କ' ଜାଇଇଂ ; ୧୭-'କ' -'ଖ' ବହି ; ୧୮-'ଗ' ରଖି ; ୧୯-'ଗ' ଯେତେକରୁ ; ୨୦-'କ' ହୁଅଇ ; ୨୧–'କ' ଖର ; ୨୨-'କ' ଯେତ୍ନେ, 'ଗ' ହୃଦୟକୁ ଯେବେ ଧନ ; ୨୩–'ଖ ଗ୍ରାସନ୍ତି ।

ଅନୁରାଗ ଜାତ କରି                    କ୍ଷଣକେ ନାଶିଲୁ ଗୋରୀ
ମୁଂ ତୋ ଦେହ ଛାଇ ପରି ସିନାରେ[୨୪] ଧନ
ଜଳକୁ ମୀନ ଛାଡ଼ିଲେ                    କେତେ କାଳ ଥାଇ ଭଲେ
ଯେ କଥା ବିଚାର କିମ୍ପା ନ କଲୁ ମନ,
ଆଶା ତରୁ[୨୫] ଲଗାଇ ବାଳା
ଫଳିବା ବେଳକୁ ନିଜେ[୨୬] କଲୁରେ ହେଳା ।୧୧।

ଫୁଟି ଯାଉଛି ନୟନ                    ନ ଦେଖି[୨୭] ତୋର ବଦନ
ବାଁଟେ ଭେଟ ହେବା[୨୮] ଯାଏଂ ପାଇଟି ରହୁଂ
ମନ୍ଦ ମନ୍ଦ ହସି କରି                    ବଦନ ଲୁଆଂଛ[୨୯] ଗୋରୀ
ସଂସାର ଭିତରେ ତାହା ପାଇବି କାହୁଂ,
ଅଳପରେ ବିହି ଦଣ୍ଡିଲା
ସପନ ପରାଯେ ସୁଖ କେଣିକି ଗଲା ।୧୨।

ଆଉ ନ ରହିଲା ବୁଦ୍ଧି                    ଘୋଟିଲା ବିରହ ବ୍ୟାଧି
ତରୁଣୀ ଲବଣ୍ୟନିଧି ଗଲୁରେ[୩୦] କାହିଂ
କୋଳେ ଆସି ଥରେ ବସ                    ଦୁଃସହ ସନ୍ତାପ ନାଶ
ଲଭଇ ସୁଖ ଅଶେଷ ତୋ ମୁଖ ଚାହିଂ,
ପ୍ରାଣବନ୍ଧୁ ନ କର ହେଳା
ବାନ୍ଧବୀ ତୁ ମୋ ହୃଦୟ ମୁକୁତାମାଳା ।୧୩।

ପ୍ରଥମ ପୀରତି ତୋର                    ପଡ଼ୁଛି ମନରେ ମୋର
ସରୋବର[୩୧] ତଟେ ଫୁଲ ତୋଳିବା ପାଇଂ
ଭେଟ ହୋଇଥିଲୁ ଗୋରୀ                    ଜଳକୁ ଅନାଇଂ କରି
ଏମନ୍ତେ ମୁଂ ପରବେଶ ହୋଇଲି ଯାଇଂ,

---

୨୪-'କ' ପରରେ ; ୨୫-'ଖ' ତରୀ ; ୨୬-'କ' ନିକେ ; ୨୭-'କ' ଦେଖି ; ୨୮-'କ' ହେବ ; ୨୯-'ଖ' ନୁଆଇଂ ; ୩୦-'କ' ଲାବନ୍ୟନିଧି ଗଲ ରେ; ୩୧-'କ' ସରୱର୍ ।

କରୁଣା ନୟନେ[୩୨] ଗ୍ରହିଂଲୁ
କୁସୁମ ଦେଖାଇ ମତେ ଭଷା[୩୩] କହିଲୁ ।୧୪।

ତୋ ମନ ଜାଣି ସେକାଳେ     ପସିଲି ଯାଇ ମୁଁ ଜଙ୍ଗେ
କୁସୁମ ସକଳ ଆଣି ତୋ ପାଶେ ଦେଲି
ମାଗିଲି ସେ କାଳେ ଯାହା     ତୁ ତ ଜାଣୁ[୩୪] ହେମଦେହା
ଅନୁରଗ ବଶୁଂ କେବେ ନ କଲୁ ନାହିଂ,
ସେହି ରୂପେ ପ୍ରତି[୩୫] ପାଳିଲୁ
ଭବି ବଡ଼ ଭବେ ମୋତେ କିଣି ରଖିଲୁ ।୧୫।

ତେଡ଼େ ଦିନୁ ତେଡ଼େ ପ୍ରୀତି     ଜାଣୁ ତୁ ରେ କୁନ୍ଦଦନ୍ତୀ
ଯେବେ ଦଇବେ ଯୁବତୀ ହେଲୁରେ ଧନ୍ୟ
ହୋଇ ତୁ ଅନେକ ସୁଖ     କେବେ ହେଂ ନୋହୁ[୩୬] ବିମଖ
ବେଳକୁ ଛାଡ଼ିଣ ଗଲୁ କରି ନିଧନ[୩୭],
ଦୟାବତୀ ବୋଲଉ ପର
ନିର୍ଦ୍ଦୟ ହୋଇଲୁ ଯେବେ ତରୁଣୀ ହାର ।୧୬।

ଦିନେ ହେଂ ବିମନ ତୋର     ଦେଖି ନାହିଂ ନେତ୍ର ମୋର
ରୁଷି କଥା ନ କହିବା[୩୮] ଅଇଲ କାହୁଂ
କପଟ ମନରେ ଯେବେ     ବଚନ ନ କହୁ ଭବେ
ଅନୁସରି ରହିଲେ[୩୯] ମୁଂ ମୁଖକୁ ଗ୍ରହୁଂ[୪୦]
ହସି କର ଧରି ମୋହର
ଯେତେକ[୪୧] କଥାକୁ କିମ୍ବା ଯେତେ କାତର ।୧୭।

---

୩୨-'କ' ନୟନନେ ଗ୍ରହିଂଲୁ ; ୩୩-'ଗ' ସର୍ବ ; ୩୪-'ଗ' ଜାଣି ; ୩୫-'ଖ' ପ୍ରୀତି ; ୩୬-'ଗ' ନୋହି ; ୩୭-'ଖ' ନିର୍ଦ୍ଧନ ; ୩୮-'ଗ' ରହନ୍ତି କଥା କହିବାର ; ୩୯-'ଗ' ଗ୍ରହିଂଲେ ; ୪୦-'କ' ଗ୍ରହିଂ ; ୪୧-'କ' ଯେତେ କଥାକୁ ।

ଯେତେକ ବୋଲିଣ ସହୀ    ମୋ ଗଳାରେ ଭୁଜ ଦେଇ
ରତି ରସେ ମୋଡ଼ି ହୋଇ ଭର[୪୨] ଅଳସ
ଅଳପ ଅଳପ ହସି    ଉରସୁ ବସନ ଖସି
ନୟନଗୋଚର ହୋଏ କୁଚ କଳସ
କେତେ ସୁଖ ଲଭିଛି ତେଣେ
ଦୁଃଖ ହେଲା ଯେବେ ତହୁଁ କୋଟି ଦୁଗୁଣେ[୪୩] ।୧୮।

ରସିକ ରମଣୀ ମଣି    ଏଣୀ ନୟନ ସୁବେଣୀ
ମୋ ମାନସେ ଥିଲି ମଣି ଯେମନ୍ତ ହେବ
ଛଡ଼ାଛଡ଼ି ନୋହି ଇବେ    ତୋ ମୋ ଦିନ ଯିବ ଭବେ
କ୍ଷଣକେ ଅନ୍ତର ଏବେ କଲା ଦଇବ,
ଜୀବନେ[୪୪] ମୁଂ ଅଛି ବରତି
ପ୍ରାଣବନ୍ଧୁ କେଣେ ଗଲୁ ଛାଡ଼ି ପୀରତି ।୧୯।

ମୁର୍ଚ୍ଛି[୪୫] ନ ପାରିବି ତୋତେ    ପ୍ରାଣ ଥିବା ପରିଯନ୍ତେ
ବର୍ଞ୍ଚିବି ଦିନ କେମନ୍ତେ ଉପାଏ କହି
ନିକଟେ ନ ଦେଲେ ଭେଟ    ହୋଇବ ପ୍ରାଣ ସଙ୍କଟ
କାମ କରିଅଛି ହଟ ଦହିବ[୪୬] ଦେହ,
ଧନ ଆଉ ନ ଦିଶେ ବୁଦ୍ଧି
ବଢ଼ୁଛି ତୋହ ବିହୀନେ ବିରହ ବ୍ୟାଧି ।୨୦।

ଯେତେ କହି ଯୁବା ବର    କରି ଅଦୃଷ୍ଟ[୪୭] ଆଦର
କଷ୍ଟେ କଷ୍ଟେ କରି ପିଣ୍ଡେ ପ୍ରାଣ ରଖିଲା
ଯେକାନ୍ତରେ ଚିନ୍ତି ତାକୁ    ହରଇ ଦିନ ମାନଙ୍କୁ
ସେହି[୪୮] ରୂପେ ବେନି ମାସ ଶେଷ ହୋଇଲା

---

୪୨-'ଖ' ଭରି ; ୪୩-'ଖ' ଦ୍ୱିଗୁଣେ ; ୪୪-'କ' ଜୀବନ ; ୪୫-'ଖ' ମୂର୍ଚ୍ଛି ; ୪୬-'କ' 'ଖ' ବହିବ ; ୪୭-'କ' ଅଦୃଷ୍ଟ ; ୪୮-'ଖ' ଯେହି ।

ଝଡିଗଲା ଅଙ୍ଗ ତାହାର
ପ୍ରୀତି ବିଚ୍ଛେଦ ଜନକୁ[୪୯] ଏହା ଗୋଚର ।୨୧।

ଯେଣିକି ଗ୍ରହିଂଲେ ହାର ଦିଶଇ ମୋହର ତୋଳା
କହିବା ଗ୍ରହିଂବାଂ ଭଷା ପ୍ରୀତି ବଚନ
ଓଷା କୋଠି ଠାରେ ରସ ଆବର ଦୂତୀ ସନ୍ଦେଶ
ପଥ ଅନୁସରିବାର ପଡ଼ଇ ମନ,
ଯେଉଂ ସ୍ଥାନେ ହୁଅଇ ଭେଟ
ବିଭ ଦିନା କେତେ[୫୦] ହେଲା ଯେଉଂ ଆକଟ ।୨୨।

ପ୍ରଥମରେ ଚିନ୍ତା ଜାତ କରିଥାଇ ଅବିରତ
ଦ୍ୱିତୀୟରେ[୫୧] ଦେଖିବାକୁ ଶରଧାଂ କଲା
ତୃତୀୟେ ଦୀର୍ଘ ନିଶ୍ୱାସ ହୋଇଲାଂ ତାର ପ୍ରକାଶ
ଚତୁର୍ଥେ ବିରହ ଜ୍ୱର ଅଙ୍ଗେ ଘୋଟିଲା,
ପଞ୍ଚମରେ ଦହେ[୫୨] ଶରୀର
ଷଷ୍ଠେ ଆଉ ନ ରୁଚିଲା କେବେ ଆହାର ।୨୩।

ସପ୍ତମେ କାମ ଆକର୍ଷି[୫୩] ଅଷ୍ଟମେ ଉନ୍ମାଦ ଆସି
ତନୁ ଦେଶେ ବ୍ୟାପୀ ତାକୁ ଅଥଏ କଲା
ନବମ ଦଶାରେ ପ୍ରାଣ ସନ୍ଦେହ ହୋଇଲା ପୁଣ
ସଙ୍ଗତି ଲୋଭରେ ନିଜ ପ୍ରାଣ ରଖିଲା,
ଯେତେ ଦଶା ଲଭି କୁମର
ବାରତା ପାଇଲା ନାହିଂ ପ୍ରାଣପ୍ରିୟାର ।୨୪।

---

୪୯—'ଘ' ପ୍ରୀତି ବିଚ୍ଛେଦୀମାନଙ୍କୁ ; ୫୦-'କ', 'ଖ' ବିନା କେତେ ; ୫୧-'ଖ' ଦ୍ୱିତୀୟରେ ; ୫୨-'କ', 'ଖ' ଦେହେ ; ୫୩-'କ' ଆତୁସି, 'ଗ' ଆକର୍ଷି ।

ମନେ କରେ ଦୟାଶୀଳା      ଅଟଇ ମୋହର ବାଳା
ଥାଉ ଥାଉ ଆଯତ୍ତ କି ଛାଡ଼ିବ ମୋତେ
ମାସକେ ଆସିବି ବୋଲି      କହି ଯେ ଥିଲା ନାଗରୀ
ପାସୋରିଲା ପଡ଼ି ଅବା କାନ୍ତ ସଙ୍ଗତେ
ସ୍ତିରୀ ଜାତି କାମରେ ବଶ
ଅନ୍ତର ହେଲେ ଇଛନ୍ତି ଆନ ପୁରୁଷ ।୨୫।

ତଥାପି ନିଗଣ ତାର      ଜାଣିବା ଯାଏ ମୋହର
ପରଶକୁ ରଖିବାର ଅଟେ ଉଚିତ
ଆସିବ କି ନ ଆସିବ      ଜାଣିମା ତାହାର ଭବ
ବିନୟ କରିଣ ମୁଁ ଲେଖିବି ଉଦନ୍ତ
ଯେତେ ଭବି ଲେଖ ଲେଖଇ
ରାମଚନ୍ଦ୍ର ଯେହ୍ନ ରସ ରସେ[୫୪] ରସାଇ[୫୫] ।୨୬।



---

୫୪–'ଘ' ଗୀତ ; ୫୫·'କ' ରସଇ ।

# ସପ୍ତମ ଛାନ୍ଦ

( ରାଗ : ଶଙ୍କରାଭରଣ )

ଅଦ୍ଭୁତ କୁମାରୀ ଚନ୍ଦ୍ରବଦନୀ ସୁଶୀଳା
ସୁକୁମାରୀ ମୋ ହୃଦ ମଣ୍ଡନ ମୋତି ମାଳା
ଜୀବଧନକୁ ଚିଟାଉ
ଲେଖୁଅଛି ଦୋଷ ମୋର ନ ଧରିବୁଁ[1] ଆଉ ।୧।

ଯେଉଁ ଦିନୁ ପ୍ରାଣବନ୍ଧୁ ଗଲୁ ମୋତେ ଛାଡ଼ି
ନିରନ୍ତରେ ଶୋକ ଜଳେ ମରୁଅଛି ବୁଡ଼ି
ପ୍ରତିକାର ଆଉ ନାହିଁ
ତୋ ସଙ୍ଗତେ ସବୁ ସୁଖ ଗଲ ଚନ୍ଦମୁହିଁ ।୨।

ଝଣ୍ଟିଲୁ ତେଡ଼େ ପୀରତି ପାଞ୍ଚି[2] ମୋ ନିଧନ
ଲଭିଲୁ ନବୀନ ପତି ଚତୁରୀ ରତନ
କରି ବହୁତ ନିରାଶ
ରହିଲୁ ଦୂରରେ ବନ୍ଧୁ ଦେଇ ମୋତେ ବିଷ ।୩।

ରମଣୀ ରତନ ଯେବେ ଥିଲୁ ପିତା ପୁରେ
କେତେ ରୂପେ ସ୍ନେହ କରିଥିଲୁ[3] ମୋହଠାରେ
ଯେବେ ମନେ ତା ନ କଲୁ
ଜୀବଧନ କ୍ଷଣକ ଭିତରେ ପାସୋରିଲୁ ।୪।

ଦିନେ ଦିନେ ଅନୁରାଗେ ବୋଲୁ ଯାହା ଧନ
ତୁମ୍ଭ ବିନୁ ତନୁ ମୋର ନ ଛୁଇଁବ ଆନ
ପତି ହେବ ତୁମ୍ଭେ ମୋର
ନ ରଖି ସେ କଥା ତୁ ଲଭିଲୁ ଯେବେ[4] ବର ।୫।

---

୧-'କ' ନ ଥିବ; ୨--'ଘ' କରି; ୩-'ଘ' କହୁଥାଉ; ୪-'ଙ' ଲଭିଲୁ ଏ; 'ଘ' ଯେବେ ଲଭିଲୁ ତୁ ।

ସତ୍ୟ କରି ଚନ୍ଦ୍ରମୁଖୀ ଅସତ୍ୟ ହୋଇଲୁ
ଶଶୁର ଘରରେ ଯେବେ ଯାଇଣ ରହିଲୁ[5]
ପ୍ରୀତି କୁଶଳା ତୁ ହୋଇ
ମନେ ତୋର ନ ପଡ଼ିଲି ଗୁଣ ଚନ୍ଦ୍ରମୁହିଁ ।୬।

ସମୁଦ୍ର ପରାଏ ତୋତେ ଆଶା[6] କରିଥିଲି
ସବୁ ସୁଖ ଛାଡ଼ି ଯେବେ ନିରାଶ ହୋଇଲି
ଗଳା କାଟି ଦେଲୁ ଗୋରୀ
ତୋ ବିଛେଦେ ନିଶି ଦିନ ମରୁଅଛି[7] ଝୁରି ।୭।

କି କରିବି ତୋ ବିନୁ[8] ଆନ ନଦିଶେ[9] ମୋତେ
ଦଶ ଦିଗ[10] ଅନ୍ଧକାର ପ୍ରାଏ ହୋଏ ପ୍ରତେ
ଡ଼ୋଳା ଖୋଳି ନେଲୁ ମୋର
ଯଶ ଅଯଶକୁ ବାରେ ନ କଲୁ[11] ବିଗ୍ଭର ।୮।

ପ୍ରାଣବନ୍ଧୁ ପାଷାଣ ପରାୟେ ଚିତ୍ତ କଲୁ
ଆଉ ଦରଶନ ବାରେ ବାରତା ନଦେଲୁ
ଏହି କଥାରୁ ତୋହର
ନିରାଶ ହୃଦୟ ସବୁ ଗଲନି ଗୋଚର[12] ।୯।

ଯେମନ୍ତ ବିଗ୍ଭର ଯେବେ ମନେ କରିଥିଲୁ
ତେବେ ରୂପେ ପୀରତି କାହିଁକି ବଢ଼ାଇଲୁ
ଯେବେ ହେଲ ଯେହିମାନ
ତୋହ ଲଗି ଝୁରି ଝୁରି ଯିବ ମୋ ଜୀବନ ।୧୦।

---

୫--'ଘ' ଘରରେ ରହି ମନୁ ପାସୋରିଲୁ; ୬-'ଖ' ଆଶ୍ରା; ୭-'ଗ' ସରୁ ନାହିଁ; ୮-'ଗ' ବିହୂନେ; ୯-'ଗ' ନଦିଶଇ ୧୦-'ଘ' ଦଶ ଦିଶ; ୧୧-'ଘ' ନ କରି ୧୨--'ଖ' ଏହି କଥାରୁ × × × ଗୋଚର" ଅଂଶ ପରିବର୍ତ୍ତେ ୧୦ମ ପଦର ଶେଷ ଦୁଇ ପଦ ପୁନର୍ବାର ରହିଛି ।

ଅନୁସରି ଥିଲି ତୋତେ ବାଳକ କାଳରୁ
ସେବା ଘେନି ତୁହି ଦୟା କରିଥିଲୁ[୧୩] ଭାରୁ
ପ୍ରେମଧନେ କିଣି ମୋତେ
କାମେ ବନ୍ଧ କରାଇଲୁ[୧୪] କି ବିଗ୍ଭରି ଚିତ୍ତେ ।୧୧।

ଦୟାଳୁ ପଣକୁ[୧୫] ତୋହୋପରି ଜଣେ ନାହିଁ
ନିଗଣ ହୃଦୟ ଯେବେ ହେଲୁ କାହିଁ ପାଇଁ
ମୁଁ ଯେ ସେବକ ତୋହର
ମୋହଠାରେ ଉଚିତ ନୁହଇ ଯେ ବେଭାର ।୧୨।

ଆଶା ତରୁ ବଢ଼ାଇଲୁ କରୁଣା ଜଳରେ
ମୂଳ କାଟି ଦେଲୁ ଯେବେ ଫଳିବା କାଳରେ
ଦୋଷ ହୋଇଲା କାହାର
ଦୟାଶୀଳା ଦିବ୍ୟ ଚିତ୍ତେ ଏ କଥା ବିଗ୍ଭର ।୧୩।

ଦେଖାଇଣ ଇନ୍ଦ୍ରଜାଲ ପରାଣେ ହରିଲୁ
ଚଖାଇଣ ସୁଧାରସ ଭୁଞ୍ଜାଇ ନ ଦେଲୁ
ଆଶା ନାବରେ ବସାଇ
ପାରି ତ ନ କଲୁ[୧୬] ଭସିଗଲା ସିନା ସହି[୧୭] ।୧୪।

ବେଳରେ ତୁ ପଣ କରିଥିଲୁ ଅଙ୍ଗୀକାର
ଛଡ଼ା ଛଡ଼ି[୧୮] ହେଲେ ପ୍ରୀତି ନୋହିବ ଅନ୍ତର
ସତ୍ୟ ଜଗଇ ପ୍ରମାଣ
କ୍ଷଣକେ ନାଶିଲୁ ଯେବେ ଯାଉଛି ଜୀବନ[୧୯] ।୧୫।

---

୧୩-'ଘ' ଘେନି ଦୟା ତୁହି ବହିଥିଲୁ ; ୧୪—"କାମେ ବଧ କରାଇଲୁ" (କନ୍ଦର୍ପ ଦ୍ୱାରା ବଧ କରାଇଲୁ) ପାଠ ମଧ୍ୟ ଗ୍ରହଣୀୟ ; ୧୫-'ଘ' ପରିଚ୍ଛେଦେ ; ୧୬-'ଘ' ମରି ତ ନଗଲି ; ୧୭-'ଖ', 'ଗ' ଭସିଗଲି ସିନା ମୁହିଁ ; 'ଘ' ଭସି-ଗଲି ହିନା ତହିଁ ; ୧୮-'କ' ଛାଡ଼ ଛାଡ଼ ; ୧୯—'ଗ' ପରାଣ ।

ଶରଣ ପସିଲଠାରେ ଦୟା ଦୂର କରି
ଛାଡ଼ିବାକୁ କେହେଂ[୨୦] ସତ[୨୧] ବଳିଲ ସୁନ୍ଦରୀ[୨୨]
ମୁଂ ତୋ ଦେହ ଛାଇ ସିନା
ସଙ୍ଗେ କିମ୍ପା ନେଲୁ ନାହିଂ ସୁକୁନ୍ଦ ରଦନା ।୧୬।

ଅଣ ଆୟତରେ ଅଙ୍ଗ ନ ପାରିଲେ[୨୩] ଦେଇ[୨୪]
ଦେଖୁଥାନ୍ତି ନିତ୍ୟେ ତୋତେ[୨୫] ସୁଧାକରମୁଦ[?]
ମନ ହୋଉଥାନ୍ତା[୨୬] ତୋଷ
ଦେଖୁଥିଲେ ନ ପାରନ୍ତୁ କରିଣ ନିଗଶ ।୧୭।

ପତି ଦେଶେ ଯେବେ ମୁଂ ଗୋ[୨୭] ରହିଥାନ୍ତି[୨୮] ତୋର
ଯେଡ଼େ[୨୯] ଆକଟରେ ଦେଖାଦ୍ୟନ୍ତୁ[୩୦] ଗମାବର
ଦୂରେ ଘର କରିଥାନ୍ତି
ତୋ ଆଶାରେ ଚନ୍ଦ୍ରମୁଖୀ ତୋ ପୁରେ ରହନ୍ତି ।୧୮।

ଯେଉଂ ପଥେ ଆତଯାତ ହେଉଥାନ୍ତୁ ଧନ
ଜଗି ବସିଥାନ୍ତି ମୁଂ ଯେ[୩୧] ସେହି ବାଟରେଣ
ଦେଖି ନିସ୍ତାର ପାଆନ୍ତି
ସମ୍ପୂର୍ଣ୍ଣ ଚନ୍ଦ୍ରମା ମୁଖ ଦ୍ରଶନ[୩୨] କରନ୍ତି ।୧୯।

ପତି ସଙ୍ଗେ ପ୍ରତିଦିନ ବଞ୍ଚୁଅଛୁ ଦିନ
କେମନ୍ତେଣ ଦିଶୁଥିବୁ ଦେଖନ୍ତି ନୟନ
ନାନା ତମାଳ କରନ୍ତି
ପତିର କେଙ୍କି ରହସ ପସ୍ୱରିଣ ଥାନ୍ତି[୩୩] ।୨୦।

---

୨୦-'କ', 'ଖ' କେହି ; ୨୧-'ଘ' ଚିତ୍ତ ; ୨୨-'ଗ' ତୋହୋରି, 'ଘ' ନାଗରୀ ; ୨୩-'କ' ନପାଲି, 'ଖ'-ନ ପାରିଲି ; ୨୪-'ଗ' ଛୁଇଂ ; ୨୫-'ଗ' ନିରତେ ତୋ ; ୨୬-'ଖ' ହେବଥାନ୍ତା ; ୨୭-'କ', 'ଖ' ଯେବେ ଗୋ ; ୨୮-'ଙ' ରହିଥାନ୍ତା ; ୨୯-'କ', 'ଖ' କେଡ଼େ ; ୩୦-'କ' ଦେଖାଦ୍ୟନ୍ତ ; ୩୧-'ଘ' ମୁହିଂ ; ୩୨-'ଖ' ଦର୍ଶନ ; ୩୩-'ଖ' ପସ୍ୱରୁଣ ଥାନ୍ତି; 'ଗ' ପସ୍ୱରି ଥାଆନ୍ତି ।

କାନ୍ତ କଥା[୩୪] ଲକ୍ଷ୍ୟା କରି[୩୫] ନ କହିଲେ ଧନ
ବସନ କାଢ଼ି ଦେଖନ୍ତି ନଖ ଦନ୍ତ[୩୬] ଚିହ୍ନ
ଯେହି କଥା ସିନା ହେଜି
ସଙ୍ଗତେ ନ ନେଇ[୩୭] ଛାଡ଼ିଗଲୁ କଥା ବୁଝି[୩୮] ।୨୧।

ଯେବେ କି କରୁଣା ଭଣୀ[୩୯] ତରୁଣୀ ରତନ
ତୋ ବିହୁନେ[୪୦] କାମ ମୋର ଘେନିଣ ଜୀବନ
ଆଉ ନାହିଂ ପ୍ରତିକାର
ସବୁଠାକୁ ଉନତି ଜଗତୀ ତୁହି[୪୧] ମୋର ।୨୨।

ମୁଂ ଯେବେ ଯୁବତୀ ହୋଇଥାଆନ୍ତି ରେ ତୋରି[୪୨]
ମୋ କଥା ବୁଝନ୍ତୁ ଯେହ୍ନେ ଥାନ୍ତି ପ୍ରୀତି କରି[୪୩]
ପ୍ରୀତି ଲଗି ପ୍ରାଣ ଯାନ୍ତା
ଅଢ଼ାଇ ଦିନରେ କିମ୍ପା ଛାଡ଼ ବାଡ଼ ହୋନ୍ତା ।୨୩।

ନିଗଣ କରିଣ ମୋତେ ନ ଦେଲୁ ସନ୍ଦେଶ
ସେ ଥକାଶୁ ପ୍ରାଣବନ୍ଧୁ ଯାଉଅଛି ନାଶ[୪୪]
ଅଣ ଆୟତ୍ତ ହୋଇଲେ
ଦିନେ ହେଂ ସଙ୍ଖୋଳା କିମ୍ପା ନ କଲୁ ଭଷାରେ ।୨୪।

ବିବେକ ହୋଇଣ ଅବିବେକ[୪୫] ପଣ କଲୁ
ପଥ ଛାଡି ଅପଥେ କାହିଂକି ବଣା ହେଲୁ[୪୬]
ପାଶେ ଥାଉ ପଦ୍ ବାରି
କୁଶ ଜଳ[୪୭] ପାନ କଲୁ ମନେ କି ବିଗ୍ଭରି ।୨୫।

---

୩୪-'ଗ' ଏକାନ୍ତ 'କଥା ; ୩୫-'ଖ' ଲକ୍ଷ୍ୟ କରି; ୩୬-'ଘ' କରଜର; ୩୭-'ଖ' ନ ନେଲୁ ; ୩୮-'ଗ' ହେଜି ; ୩୯-'କ' ଯେବେ କି କରି ଆଉ ; ୪୦-'ଖ' ବିହ୍ନିନେ ; ୪୧-'କ', 'ଖ' ସବୁଠାକୁ ଗଜଗତି ଗତି ନାହିଂ ; ୪୨-'ଖ' ଗୋରୀ ; ୪୩-'କ' ଥାନ୍ତୁ ପ୍ରତିକାର ; ୪୪-'ଘ' କରୁଅଛି ହାସ ; ୪୫-'ଖ' ବିବେକୀ ହୋଇଣ ଅବିବେକୀ ; ୪୬-'ଘ' କାହିଂକି ଅପଥେ ବସାଇଲୁ ; ୪୭-'ଘ' କୂପ ଜଳ ।

ଅନେକ ରତ୍ନ ଜଡ଼ିତ କନେକ ପଞ୍ଜରେ
କାକକୁ ସଞ୍ଚାର କଗଇଲୁ କି ହେତୁରେ
ତୁ ତ ଜାଣୁ ସବୁ ରସ
ଉଚ୍ଚ ଆଉ ନୀଚ ଜନେ[୪୮] କଲୁ ଅଭିଳାଷ ।୨୬।

ମୁଂ ତ ଭଜିଥିଲି ମନ ଜାଣିଣ ତୋହର
ସେବା ମୋର ନ ଘେନିଣ ଗଲୁ କାନ୍ତପୁର
କଲୁ ଗୁଆଂରରେ ପ୍ରୀତି
ତୋ ସମାନେ ସମକକ୍ଷ ନୋହେ[୪୯] ତୋର ପତି ।୨୭।

ମୁହିଂ ଜାଣଇ ତୋ ମନ ତୁ ଜାଣୁ ମୋ ମନ
ମୁଂ ଭଷା କହିଲେ ତୁହି କହୁ ଯେ ବଚନ
କାନ୍ତ କୋଳେ ଥିଲେ ଶୋଇ
ମୋ ପ୍ରୀତି ଭବ ବିଗ୍ଭରୁ[୫୦] ନଥିବୁ କି ତୁହି ।୨୮।

ହା ହା ବିହି ଏ କଥା ବିଗ୍ଭର କରିଥିଲୁ
କାହା ଧନ କାହିଂ ନେଇ କାହାକୁ ସେ[୫୧] ଦେଲୁ
ସ୍ତିରୀ ରତ୍ନ ଶିରୋମଣି
କି ପାପେ ହୋଇଲୁ ତୁରେ ଗୁଆଂର ଘରଣୀ ।୨୯।

ପତି ତୋର ଡିଲେ ମନ ଭର୍ଗି କି ପାରିବ
ତୋ ସମାନେ[୫୨] ରସବତୀ କେଉଁ ଆରମ୍ଭିବ
ତୁ ତ ବୁଝିବୁନି[୫୩] ସର୍ବ
ପିତା ପୁରେ ଆସ ତହିଂ[୫୪] ନ ରହିଣ ବେଗ ।୩୦।

---

୪୮-'କ' ଉଚିଥାଉ ନଜନେ, 'ଗ' ଉଚ୍ଚ ଥାଉ ହୀନ ଜନେ; ୪୯-'କ' ନୋ ହେ ; ୫୦-'ଖ' ବିଗ୍ଭରି ; ୫୧-'ଗ' କାହା କୋଳେ ; ୫୨-'ଖ' ତୋଷ ମନେ ; ୫୩-'ଖ' ବୁଝିବୁଣି; ୫୪-'ଝ' ତୁହି ।

ଦଇଇ ବଶରୁ[55] ସବୁ ହେଲା ଯେତେ କଥା
କର୍ମେ ଯାହା ଥାଇ ଆନ ନୁହଇ ସର୍ବଥା
ହେଲେ[56] ମୁଂ ତ ଗଲି[57] ନାଶ
ଯେବେ ଧନ ନ ଆସିବୁ ହେବ ତୋର ଦୋଷ ।୩୧।

ଯେତେ ସ୍ନେହ ତୋଠାରେଣ କାନ୍ତ ଥିଲେ କରି
ସବୁ ଦୂର କରିଣ ଆସିବୁ ପିତା ପୁରୀ
ଶାଶୁ ଶଶୁର ବଚନ
ସବୁ ଏଡ଼ି ଲେଖ ବୁଝି ଆସିବୁ ରେ ଧନ ।୩୨।

କଣ୍ଠ କରିଅଛୁ ସତ୍ୟ ବଚନ ମୋଠାରେ[58]
ମାସେକେ ଥରେ ଆସିବି ତୁମ୍ଭରି ଆଶାରେ
ଦୂତ[59] କରିଅଛି ଏହା
ଦହୁଛି[60] କାମଦେବ ନ ବୁଝି[61] ତୋର ଦୟା ।୩୩।

ମାସ ଘୁରି ବାଟ ଘୁହିଂ ତେଜିବି ପରାଣ
ନ ଦେଖିଲେ ମୁଖ ତୋର ସତ୍ୟ ଏ ପ୍ରମାଣ[62]
ହତ୍ୟାକାରେଣୀ ତୁ ହେବୁ
ସାଧୁତ କୁମାରୀ ହୋଇ ଅକୀର୍ତ୍ତି ଅର୍ଜିବୁ ।୩୪।

କନକ ବରନା ବିଦ୍ୟାଧରୀ ସୁକୁମାରୀ
ଆଶା ପୂର୍ଣ୍ଣ ନ କରିଣ ଗଲୁ ମୋତେ ମାରି
ଫାଟି ଯାଉଛି ହୃଦୟ
ବୀଣା କରି[63] ବନ୍ଧୁ ତୋହ ଗୁଣ ସମୋଦୟ ।୩୫।

---

୫୫-'କ' ଦଇବଶରୁ, 'ଗ' ଦଇବ ଯୋଗରେ ; ୫୬-'ଘ' ହେଲେ ; ୫୭ 'ଗ' ଗଲି ମୁହିଂ; ୫୮-'କ' ମୋହର, 'ଘ' କରିଅଛୁ ବଚନ ମୋଠାରେ ; ୫୯-'କ' ଦୂତ, 'ଖ' ଦୂତୀ ; ୬୦-'କ' ଦହୁଅଛି, ୬୧-'ଗ' 'ଘ' ସହୁଛି-କାମ ବେଦନା ବୁଝି ; ୬୨-'ଖ' ବଚନ ; ୬୩-'କ'-ବିନା କରି ।

ଯେଉଁ ଦିନ ସତ୍ୟ ମୁହିଂ କଲି ତୋହ[64] ସଙ୍ଗେ
ଦେହ ବୁଦ୍ଧି ପାସୋରି ମିଳିଲୁ ମୋର ଆଗେ
ହୃଦୟରେ ଶୁଆଇଲି[65]
ମୁକତି ଲଭିଙ୍ଗ[66] ପରି ମନରେ ଘେନିଲି ।୩୬।

ଜ୍ଞାନ ଦେହେ ପସନ୍ତେଶ ଲଜ୍ଜ୍ୟା ଭବ ପାଇ[67]
ମୁଖ ପୋତି ପାଦତଳେ ବସିଲୁ ଗୋ ତୁହି[68]
ମୁଂ ଯେ ଉଠି କଲି କୋଳ
ଚିବୁକେ ତୋହର ହସ୍ତ ଦେଇ ମୁଂ ସତୁର ।୩୭।

ଉଲଟ ରତିକି ବଡ଼ ସଙ୍କୋଚ ପାଇଲୁ
ମୁଖ ଟେକି ପ୍ରାଣବନ୍ଧୁ କେବେ ନ ଗ୍ଭହିଁଲୁ
ପାଦ ଧରି ଗ୍ଭଟୁ କହି
କିଛୁ[69] ବେଳେ ପ୍ରସନ ହୋଇଲୁ ଗ୍ଭନ୍ଦମୁହିଂ। ।୩୮।

ସେଦିନ[70] ନିଶାରେ ହେଲ ଯେତେ କେଳିମାନ
ସେ କଥା କି ମନେ ତୋର ନ ପଡ଼ୁଛି ଧନ
ଦେହ ପାଷାଣ ତୁ କଲୁ
ବୃକ୍ଷକୁ ଉଠାଇ ଦେଇ ନିଶ୍ରେଣୀ ନ ଦେଲୁ[71] ।୩୯।

ସେହିଦିନ ମେଳଗ୍ଭ ତ[72] ସଙ୍ଗ ଆଉ ନାହିଂ
ବାଟରେ ସିନା ମାତ୍ରକ[73] ଦେଖାଦେଖି ହୋଇ
ମନେ ଥିବ ତ ତୋହର
ତୋ ବିନୁ ଆନରେ ଜୀବ ରହିବ କି ମୋର ।୪୦।

---

୬୪-'ଖ', 'ଘ' ତୋର, ୬୫—'ଖ' ମୁଁ ଅଇଲି, ୬୬-'ଘ' ଘେନିଲ୍ଲ, ୬୭-'ଘ' ହୋଇ, ୬୮-'ଗ', 'ଘ' ଯେ ଯାଇ; ୬୯-'ଗ' କେତେ; ୭୦ 'କ', 'ଙ' ସେହିଦିନ; ୭୧—'କ' ନିଶ୍ରେଣୀ ଦେଲୁ; 'ଖ' ନିଶୁଣୀ ନ ଦେଲୁ, 'ଗ'–ନିଶୁଣୀ କାଟିଲୁ; ୭୨-'ଘ' ସେଦିନ ଖଡ଼ ମେଳଗ୍ଭ; ୭୩-'ଘ' ମାତ୍ରକ ସିନା ।

ପ୍ରାଣବନ୍ଧୁ ଦୟା ଯେବେ ଥିବ ମୋହଠାରେ
ପିତା ପୁରକୁ[୭୪] ଆସିବୁ ଲେଖ ପ୍ରଦେଶରେ
ମୁଖ[୭୫] ସୁଧା ମୋତେ ଦେବୁ
ପୁରୁଷ ହତ୍ୟାର ଦୋଷ ତେବେ ନ ପାଇବୁ[୭୬] ।୪୧।

ଯେତେ ଲେଖି ଦୂତୀ ସଦନକୁ ଯୁବା ଯାଇ[୭୭]
ଲେଖ କରେ ଦେଇ ତାକୁ ବିନୟ କହଇ
ପ୍ରାଣବନ୍ଧୁ ପାଶେ ଯିବୁ
ମୋ ଦୁଃଖ ଜଣାଇ ପିତା ପୁରକୁ ଆଣିବୁ[୭୮] ।୪୨।

ଜାଣୁ ଜାଣୁ ମୋର[୭୯] ଯେବେ ଛଡ଼ାଇବ ଆଶ[୮୦]
ତାଠାରୁ ନିରଶ ଶୁଣି ଖାଇବି ମୁଂ ବିଷ
ଯେତେ ଶୁଣି ଦୂତୀ ଗଲା
ହାର ସଦନରେ ଯାଇଂ ପ୍ରବେଶ ହୋଇଲା ।୪୩।

ରସିକ ରତନ ଲେଖ ଦେଇ ତାର କରେ
ବିନୟ ଉତ୍ତର ଭଷା କହି ଯେକାନ୍ତରେ
ଶୁଣି ସୁନ୍ଦରୀ ଆକୁଳ
ଅନୁରାଗେ ବେନି ନୟନରୁ ମୁଞ୍ଚି ଜଳ[୮୧] ।୪୪।

ଲେଖ ପଢ଼ି ସବୁ କଥା ମନକୁ ଆଣିଲା
ଗୃହ ବେବସାୟ ବିଷ ପରାୟେ ମଣିଲା
ମନ ହୋଇଲା ଉଚ୍ଚାଟ
କ୍ଷଣକ ଭିତରେ କାମ୍ଭ ଭର୍ଙ୍ଗିଦେଲା ଆଣ୍ଟ ।୪୫।

---

୭୪-'କ' ଆଜ ଘରକୁ, ୭୫--'କ' ସୁଖ, ୭୬-'ଗ' ହତ୍ୟା ଦୋଷର କାରେଣୀ ହୋଇବୁ; ୭୭--'ଘ' ଯୁବା ଦୂତୀ ସଦନକୁ; ୭୮--'ଖ' ଆସିବୁ, ୭୯--'ଖ' 'ମୋର' ଶବ୍ଦଟି ନାହିଁ; ୮୦-'ଘ' ମୋର ଆଶ, ୮୧-'ଗ' ତେଢ଼ିନୀର ।

ଯେକାନ୍ତରେ ଦୂତୀକି କହିଲ ପ୍ରତିଭଷା
ନ କରିବେ ଚିନ୍ତା ଶେଷ ହୋଇଲେ ବରଷା
ଯିବି ପିତା ପୁରେ ମୁହିଂ
କୁମାର ପୂର୍ଣ୍ଣମୀକି ସେ ଥିବେ ବାଟ ଗୁହିଂ ।୪୬।

ନ ଭଳିବେ ଦେହକୁ ଯତନ କରିଥିବେ
ମୁଁ ତ ତାଙ୍କୁ ମୁଛି[୮୨] ନପାରିବି ଥିଲେ ଢାବେ
ଅଣାୟତ୍ତ ସବୁ ସିନା
ସହି[୮୩]ସୁହାଇଲି[୮୪]ତାଙ୍କୁ ବିରହ ବେଦନା ।୪୭।

ଯେତେ କଷ୍ଟ ମୋ[୮୫] ଥକାଣୁ ପାଇଛନ୍ତି ସେହି
ପ୍ରାଣନାଥ କଷଣ ଯେ ଶୁଣିଇଇଂ ମୁହିଂ
ଯେଢ଼େ କଠିଣ ମୋ ପ୍ରାଣ
ନ ଯାଇ[୮୬] ଜୀବନ ଅଛି ନିଲଜ ହୋଇଣ ।୪୮।

ଦେଖ ଦୂତୀ ରୂପ ବର୍ଣ୍ଣ ସ୍ୱରୂପ ମୋହର
ଅନ୍ନ ବିଷ ପ୍ରାୟେ ଗୁହେ ମନ ନୋହେ ସ୍ଥିର
ତାଙ୍କୁ ଦେଖିବାକୁ ଆଶା
ଅବଶ ଯିବଇ ମୁହିଂ ସରିଲେ ବରଷା ।୪୯।

କହିବା ହସିବା ଯେତେ କେଳି ଭବମାନ
ତାହା ହୃଦେ ଗୁଣି ଗୁଣି ଦେହ କଲି ଖିନ
ତାଙ୍କ ସଙ୍ଗ ବିନୁ ମୋର
ସବୁ ବିଷ ପ୍ରାୟେ ମୋତେ ଲଗେ ନିରନ୍ତର ।୫୦।

---

୮୨-'ଖ' ମୁର୍ଚ୍ଛି, ୮୩-'ଗ' ମୁହିଂ, ୮୪-'କ' 'ଖ' ସୁହାଇଲ, ୮୫-'ଖ'-ର୍ସେ
୮୬-'ଖ' ନ ଛାଇଁ ।

ଅଭାଗ୍ୟରୁ ଯେତେ ମୋର ଦୁର୍ଦ୍ଦଶା ପଡ଼ିଲା
ଜନକ ଜନନୀ ଯେତେ କଷଣ ବିହିଲା
ଯେବେ ଏଥୁ ମୁହିଁ ଯିବି
ସମଏ ପିତାର ପୁରେ ତାଙ୍କ ଆଶେ ଥିବି ।୫୧।

ଦୋଷ ମୋର ନ ଘେନିମେ ବୁଝାଇ କହିବୁ
ସଲେ ସବୁ ପ୍ରକାରେ ତୁ ବଧାଇ ପାରିବୁ
ଯେତେ ଶୁଣି ଦୂତୀ ଗଲା
କୁମର ଛାମୁରେ ଯାଇ ପ୍ରବେଶ ହୋଇଲା ।୫୨।

ପ୍ରବୋଧି କହିଲା ଶୁଣ କୁମର ରତନ
ତୁମ୍ଭଠାରୁ କଷ୍ଟ ଭାଗବତୀର ଦ୍ଵିଗୁଣ [୭]
ପ୍ରାଣ ମାତ୍ର ରଖିଅଛି
ଯେତେ ସେ ଆକୁଳ ହେଲା ଚନ୍ଦ୍ର ସୂର୍ଯ୍ୟ ସାକ୍ଷୀ [୮] ।୫୩।

ପତିରେଣ ଇଛା ନାହିଁ ତୁମ୍ଭ ପ୍ରତିଆଶେ
ସମସ୍ତ ବେଦନା ଆସି କହିଲା ମୋ ପାଶେ
ସ୍ତିରୀ ରତ୍ନମଣି ସେହି
ସତ୍ୟ କରିଅଛି ପିତା ପୁରେ ଆସିବାଇଁ ।୫୪।

ଶୁଣିଣ କୁମର କାମେ ବଢ଼ିଲା ବିରହ
ଅବଧି ଚିନ୍ତା ହେବାରୁ ଖିନ ହେଲା ଦେହ
ଦୁର୍ଗା ଚରଣକୁ ଭାବି
ଭସେ ଯେହ୍ଵା ଗୀତ କଲା ରାମଚନ୍ଦ୍ର କବି ।୫୫।



---

୭-'ଖ' ଦ୍ଵିଗୁଣ ; ୮-'ଖ' ଚନ୍ଦ୍ରମୁଖୀ ସାକ୍ଷୀ ।

# ଅଷ୍ଟମ ଛାନ୍ଦ

ରାଗ : ବରାଡ଼ୀ

(ଆଷାଢ଼ଶୁକ୍ଳ ବାଣୀରେ)

ରସିକବର କୁମାରୀ ବିରହେ ଚିନ୍ତା କରଇ ତା ଚେତା ନ ରହେ
ଦୂତୀ ବଚନକୁ ଘେନି ମାନସେ ବୋଲଇ ବନ୍ଧୁ ରହିଲ ବିଦେଶେ
ନଇଲ କିମ୍ପାଇଁ
ଆଦର ଅବା ମୋହଠାରେ ନାହିଁ ।୧।

ପୁଣି ଯେମନ୍ତ ଭବଇ ଚିତ୍ତରେ ଆସିବ ସେହୁ ବରଷା ପ୍ରାନ୍ତରେ
ଯେବେ ତ ଆସି ଉଦ୍ରବ ହୋଇଲା କୁମାର ଉତ୍ସବ ନିକଟ ହେଲା[1]
ଦେଇଛି ସନ୍ଦେଶ
ଆସିବ ମୋହ ପାଶକୁ ଅବଶ[2] ।୨।

ତା ଆସିବା ଯାଏଁ ପିଣ୍ଡେ ପରାଣ ରଖିବାର ଅଟେ ଉଚିତ ପୁଣ
ସତ୍ୟ ଅନୁରାଗ ସାଧୁ ଦୋହିତା[3] କେବେ ହେଁ ନୋହିବ ନିଷ୍ଠୁର ରୀତି
ତା ଆୟତ୍ତ ଥିଲେ
ମୂରୁଛି କି ମତେ ରହନ୍ତା ଭଲେ ।୩।

ମୋ ସ୍ୱକାଶୁ ବନ୍ଧୁ[4] ହୋଇଛି ଖିନ୍ନ କଣ୍ଠାଗ୍ରତ[5] ହୋଇ ରହିଛି ପ୍ରାଣ
ଦିବା ନିଶି ସାରୁଥିବ ସେ କାହିଁ ଜଣେ ହେଁ ବିଶ୍ୱାସ ତା ପାଶେ ନାହିଁ
କେ ବୁଦ୍ଧି କହିବ[6]
ଗୁହ ନୀତି[7] କେହ୍ନେ ସାରୁଣ ଥିବ[8] ।୪।

---

୧-'ଘ' କୁମାରୋତ୍ସବ ନିକଟ ରହିଲ ; ୨-'ଖ' ଅବଶ୍ୟ ; ୩-'କ' 'ଖ' ଦୋହଚି ; ୪-'ଘ' ଧନ, ୫-'କ' 'ଖ' କଣ୍ଠଗ୍ରତ ; ୬-'ଘ' କି ବୁଦ୍ଧି କରିବ ; ୭-'ଘ' ରୀତି ; ୮-'ଘ' କରୁଣ ଥିବ ।

କେମନ୍ତେ ସରିବ ଦିବସ ନିଦି   ତା ବିନୁ କାମ ଛନ୍ଦେ ଗଲି ଘସି
ବୋଲେ[9] କି କଲୁ ନାଗରୀ ତିଳକ[10]   ଅନୁସରି ଥିଲି ତୋତେ କାଳକ[11]
ଘେନିଥିଲୁ ମୋତେ
ନିଗଣ କଲୁ କି ବିଚାରି ଚିତ୍ତେ ।୫।

ଯେ ଯାହାକୁ ଛାଇ ପରି ସେବଇ   ସେ କି ତାହାକୁ ଅନ୍ତର କରଇ
ହାଗମାଳୀ ତୁ ଟି ଅତି ବିବେକ   ମୁଁ ତୋର ଅନୁସରଣ ସେବକ
ରେ ଶିରୀଷ ଦେହା
ତୋ ବିନୁ ମୋତେ କେ କରିବ ଆହା ।୬।

ବାଳ କାଳୁ ତୋତେ ମୁଁ ନ ପାରି   ମନକୁ ଚାହିଁଥାଇ ଅନୁସରି
ପ୍ରୀତି ତୋ ସଙ୍ଗତେ କରିବା ପାଇଁ   ଅପୂର୍ବ ପଦାର୍ଥ ମାନ ଦିଅଇ
ତା ଦୟାରେ ଘେନୁ
ବିନୟ ବଚନ କହିଲେ ମାନୁ ।୭।

ଦେଖିଲେ ମୋତେ ହସ ହସ ହୋଇ   ଲଜ କରୁ[12] ମୁଖେ ବସନ ଦେଇ
ଯେକାନ୍ତରେ[13] ଯେବେ ଧରଇ କର   ଛଡ଼ାଇ କହିଣ[14] ଭଙ୍ଗୀ ଉତ୍ତର
ମୁଁ କୋଳ କରଇ
ବଦନେ ତୋର ଚୁମ୍ବନ ଦିଅଇ ।୮।

ରତିକି ମତି ବଳୁଥାଇ ମୋର   ନଜାଣି କହେ ହୋଉ[15] ସିଦ୍ଧକାର
ଯେଉଁ ଭବେ[16] ତୋହଠାରେ ଲଭଇ   ଅମର ପଦବୁ ଦୁଗୁଣ ହୋଇ
ରେ ସାଧୁସୁତ ବାଳୀ[17]
ସେମାନ ମନରେ ନ ପଡ଼େ ଭଳି[18] ।୯।

---

୯-'ଘ' ଆହା ; ୧୦-'କ' ରତନ ; ୧୧-'କ' କାନନ ; ୧୨-'କ' 'ଖ' ଲଜ କରି ; ୧୩-'ଘ' ଯେମନ୍ତରେ ; ୧୪-'ଘ' କହଇ ; ୧୫-'ଘ' କେଉଁ କଲୁ ; ୧୬-'ଖ' ଭବ ; ୧୭-'ଘ' ବାଳା ; ୧୮-'ଘ' ପଗ ।

ଫୁଲ ତୋଳି ଯାଉ[୧୯] ମୋହ ଭେଟକୁ    ମୁଂ ଯେ ନେତ୍ର ଟେକିଥାଇ ପଥକୁ[୨୦]
ସଙ୍ଗ ହୋଇ ବେନି ବନକୁ ଯାଇ    ଯେମନ୍ତ ରସ ଉପୁଜଇ ତହିଁ
ଅନୁଭବି ବିନା
ଆନ କେ ଜାଣଇ ମନ ବେଦନା ।୧୦।

ଖେଳ ଖେଳୁଥାଇ ବାଳକ ମେଳେ    ଦେଖି ମୁଂ ଉଲ୍ଲାସ ହୁଅଇ ଦୋଳେ
ଦେଖିଲେ ମୋତେ ପାଶେ ଉଭା ହୋଉ    ଖେଳିବ କି ବୋଲି ପଚାରୁଥାଉ
ମୁଂ[୨୧] ହସ୍ତ ଧରଇ
ବାଳୁତ ଯତ୍ନୁଂ[୨୨] ସେ ଭୟ[୨୩] ନ ଥାଇ ।୧୧।

ହସ୍ତ ଧରି ମୋର ବୋଲୁ ବଚନ    ଯେଠାରେ ରହି ଖେଳ ଦେଖ ପୁଣ
ମୁହିଁ ବୋଲେ ଧନ ତୋର ଆଶାରେ    ତେଣୁ ଆସିଛି ଖେଳ ଦେଖିବାରେ
ଯେହିଠାରେ ଥିବି
ତୁ ଗୃହକୁ ଗଲେ ମୁଂ ପଛେ ଯିବି ।୧୨।

ଯୁବା ନୋହିକରି ଯେମନ୍ତ ରସ    ବାଳୁତ କାଳୁ ହେଲୁ ମୋତେ ବଶ
ଦୂତୀ ହାତେ ଯେଉଂ ବାରତା ଦେଉ    ମନକୁ ମୋହର ଓଟାଗି ନେଉ
ନ ଦେଖିଲେ ତୋତେ[୨୪]
ଦିଗ ଦିଶୁ ନାହିଁ ଅନ୍ଧାର ମୋତେ[୨୫] ।୧୩।

ଦିନେ ଯେ ଧନରେ ବୋଇଲୁ ମୋତେ    କାଲି ଗତି ଆସିଥିଲ କି ଅର୍ଥେ
ତୁଣ୍ଡ ଶୁଣିଣ ଆସୁଥିଲି[୨୬] ମୁହିଁ    ଜନନୀ ବୋଇଲା ଯାଉଛୁ କାହିଁ
ହୋଇଲିନିଂଗତ
ଶୁଣିଣ ଆକୁଳ ହୋଇଲା ଚିତ୍ତ ।୧୪।

---

୧୯-'ଘ' ଯାଇ ; ୨୦-'ଘ' ନେତ୍ର ଟେକିଥାଇ ବାଟ ପଥକୁ ; ୨୧-'କ' ମୋହ, 'ଖ' ମ୍ନୋ; ୨୨-'କ' ବାଳୁତଜଙ୍କୁ; ୨୩-'ଘ' ଭବ ; ୨୪-'ଘ' ତୋରେ; ୨୫-'ଘ' ଦିଶୁଥାଇ ଦିଶ ଅନ୍ଧାର ମୋରେ ; ୨୬-'ଘ' ଆସିଥିଲି ।

ଆରଦିନ ରତ୍ର ପ୍ରାନ୍ତ କାଳରେ          କହିଲୁ ଏ ରୀତି ନଦୀ କୂଳରେ
ମୁଁ ଶୁଣି ବୋଇଲି ଯେ ଦୟା ଥାଉ     କାଲି ସଖୀ ଦେଖା[୨୭] ନ ଦେଲୁ ଯହୁଁ
ଦେଖିବା ସତ୍ବରେ[୨୮]
ରତ୍ରରେ ଗଲି ମୁଁ ଭେଟ ଆଶରେ ।୧୫।

ଓଷା ପୂଜି ସଖୀ ସଙ୍ଗତେ ଯାଉ          ପାଂଳଟି ମୋହ ଫାଇଂ ଗୃହୁଂଥାଉ
ଜାଣ ମୁଁ ଅନୁସରଇ ପଛରେ          ମେଳ ହୁଅଇ ପୁଣି କୋଠିଠାରେ
ନ ଜାଣନ୍ତି କେହି
ତୋ ମୋହ[୨୯] ପୀରତି ବଢ଼ିଲା ତହିଁ ।୧୬।

ସେଦିନୁ ଜାଣୁ ଯେଉଂ ଅନୁରାଗ          ଚିନ୍ତିଲେ ହୃଦେ ହୋଏ ଅନୁରାଗ
ଚୁମ୍ବନ ମାଗିଲେ ପଗ୍ରଲୁ ମତେ          କି ରୂପେ ଦେବି କହିଦିଅ ସତେ[୩୦]
ତୁ ହସିଲୁ ହୋଇ
ଆଲିଙ୍ଗନ କରି ଚୁମ୍ବନ ଦେଉ ।୧୭।

ଦିନେ ଦିନେ ମୋତେ ପ୍ରେମରେ ରସୁ     କୋଳ କଲେ ଆଣି ଅଙ୍ଗେ ନ ମିଶୁ
ଅଙ୍କେ[୩୧] ବସାଇଲେ ମହୀକି ଖସୁ[୩୨]          କାତର ହୋଇଣ କି ଭବେ ରସୁ
ରେ ପୀରତି ଘେନା
ନିରଶ ଯେବେ ମତେ କଲୁ ସିନା ।୧୮।

ଦେଖିଲେ ତୋତେ କନେକ ଗଉରୀ[୩୩]          ଜୀବନ ଅଙ୍ଗକୁ ହୋଉଛି ଭରି
ତୋଠାରେ ରହିଲା ମାନସ ମୋର          ନ ରୁଚଇ ମୋତେ ବେଶ ଆହାର
ନ ରହିବ ଦେହି
ତୋ ବିନୁ ଶରେ ଦହିବ ବିଦେହୀ[୩୪] ।୧୯।

---

୨୭-'ଘ' ଦେଖା ସଖୀ ; ୨୮-'ଘ' ତୋ ଦେଖା ଆଶରେ ; ୨୯-'କ' ମୋ ; ୩୦-'ଖ' ମତେ ; ୩୧-'ଖ' ଅଙ୍ଗେ ; ୩୨-'ଖ' ମହକି ହସୁ ; ୩୩-'କ' ଗୋରୀ ; ୩୪-'ଖ' ଦହି ହେବ ଦେହି ।

ପଲକେ[35] ଯେବେ ତୁ ହେଉ ଅନ୍ତର    କାମ କରେ ମୋତେ କେତେ କାତର
ଯେବେ ବହୁତ ଅନ୍ତର ହୋଇଲୁ    ଶୋକ ଜଳେ ମୋତେ ଭସାଇ ଦେଲୁ
ନ ଜୀଅଇ ମୁହିଂ
ନାଗରୀ ତୋହ ବଦନ[36] ନ ଗ୍ରହିଂ ।୨୦।

ହୃଦର ହାର ପ୍ରାୟେ କରିଥିଲୁ    ବାସି ଫୁଲ ପ୍ରାୟେ ଅଲଗା କଲୁ
ମୁଂ ଯେ ଜାଣିଥିଲି ଥିଲେ[37] ଜୀବନ    ନ ଛାଡ଼ିବୁ ମୋତେ ଜୀବନ ଧନ
ଏ ଭରସା ଥିଲ
ଦଇବ ଆଣି ଯେଣ୍ଣେ ଦଣ୍ଡ ଦେଲ ।୨୧।

ଯେଉଂ ଦିନ ବିଭ ବର୍ଦ୍ଧିଲ ତୋର    ବହୁତ ଭରସା ଛାଡ଼ିଲ ମୋର
କରୁଥାଇ ମୁଂ ଯେ କେତେ ଉପାୟେ    ନ ଦେଖି ସପ୍ତମଙ୍ଗଳା ଯାନେ
ନ ଥିଲ ଆୟତ୍ତ
ତେଣୁ ଦରଶନ ନଦେଲୁ ମିତ ।୨୨।

ତହିଂ ଉତ୍ତାରୁ ଦୁଇଦିନ ଅନ୍ତେ    ନଦୀକି ଯିବାରେ ଦେଖିଲି ତୋତେ
ଗୁରୁଜନ ଭୟେ ନ କହି କଥା    ଅନାର ଅଞ୍ଚଳ ପୋତିଲୁ ମଥା
ପାଦ କେତେ ଯାଇ
ପାଲଟି ମୋତେ ଅନାଇଲୁ ସହୀ ।୨୩।

ନୟନେ କହିବା ଭଙ୍ଗୀ ତୋହର    ଚିହ୍ନିଲେ[38] ହୃଦୟ ହୋଏ କାତର
ଯେଉଂ ରୂପେ ତୁହି ପୀରତି ଜାଣୁ    କ୍ଷଣକେ ପ୍ରେମ ଧନେ ମୋତେ କିଣୁ
ସୁମରି ତୋ'ଭାବ
କେବଳ ପିଣ୍ଡେ ରହଅଛି ଯିବ ।୨୪।

---

୩୫-'କ' ପଲକ୍କେ ; ୩୬-'କ' ବଚନ ; ୩୭-'କ', 'ଖ' ଜାଣିଥିଲେ ; ୩୮-'ଖ' ଚିଡ଼ିଲେ ।

୪ଯେବେ କୁମାର ପୂର୍ଣ୍ଣମୀ ଦିବସ ପିତା ପୁରେ ତୁ ନୋହିବୁ ପ୍ରବେଶ
ସେଦିନକ ମାତ୍ର ବାଟ ଚାହିଁବି ଅବଶ ମୋହ ପରଣ ତେଜିବି
ରେ ସାଧୁତ ବାଳୀ
ପଛେ ତୁ ମୋତେ ନ ପାଇବୁ[୩୯] ଭଳି ।୨୫।

ଏ ରୂପେ ବସି ରସିକ ରତନ ଗଣଇ କୁମାର ପୂର୍ଣ୍ଣମୀ ଦିନ
ଦିନ ଗୋଟିଏ ଖଳେ ଯୁଗ ପରି ଅନାଇ ନୟନେ ତେଜଇ ବାରି
ଟିହ୍ନିଣ ବିରସ
ଭଣଇ ରାମଚନ୍ଦ୍ର ଯେହ୍ନୁ ରସ ।୨୬।



୩୯-'ଖ' ନ ପାରିବୁ ।

# ନବମ ଛାନ୍ଦ

( ରାଗ : ସଙ୍ଗମ ତିଆରି * )

ଯେଣୁ ଅନନ୍ତରେ ଶୁଣ ରସିକ ନାଗର
ଧରଣୀକି ମଣ୍ଡିଲା ଶରଦ ଋତୁ ମୋର[୧] ।୧।

ମାଳତୀ ସୁଗନ୍ଧ ଘେନି ପବନ ବହିଲା
ବିରହୀ ହୃଦୟ କାମ ଅନଳ ଦହିଲା ।୨।

ଚନ୍ଦ୍ରକରେ ଦିଶିଲା ସୁନ୍ଦର ଦଶ ଦିଶ
ଜଳେ କୁମୁଦ କମଳ ହୋଇଲା ପ୍ରକାଶ ।୩।

ଦେଖି ସେ ରସିକବର ଏତେ ହେ[୨] ବିଗ୍ରେ
ଆସିବ ମୋ ପ୍ରାଣବନ୍ଧୁ ଏହି ସମୟରେ ।୪।

କୁମାର ପୂର୍ଣ୍ଣମୀକି ବାରତା ଅଛି ଦେଇ
କେବେ ହେଁ ତା ଆନ ନକରିବ ଗୃହମୁହଁ ।୫।

ଯିସତିସ କରି ସେହୁ[୩] ଉପାଏ କରିବ
ମୋହଠାରେ ଦୟା ବହି[୪] ଅବଶ୍ୟ ଆସିବ ।୬।

ମୋହ ପ୍ରକାଶରୁ ବାଳୀ ସର୍ବ ସୁଖ ଛାଡ଼ି
ମୋ ବିଚ୍ଛେଦେ ମାର ଶର ଦେଉଥିବ ଧାଡ଼ି ।୭।

---

(* ନବମ ଛାନ୍ଦର ରାଗ ସଂପର୍କରେ 'କ' ଓ 'ଖ' ପୋଥିରେ 'ସଙ୍ଗମ ତିଆରି' ରାଗର ନିର୍ଦ୍ଦେଶ ଥିବାବେଳେ 'ଗ' ପୋଥିରେ 'ଚିନ୍ତା ଦେଶାକ୍ଷ'ର ନିର୍ଦ୍ଦେଶ ଅଛି, 'କ' ପୋଥିରେ ସ୍ଥାନେ ସ୍ଥାନେ ଓ 'ଗ' ପୋଥିରେ ପ୍ରତି ପଦଶେଷରେ 'ଯୋ', 'ହେ' ଆଦି ଧ୍ୱନି ରହିଛି । 'ଖ' ଓ 'ଘ' ପୋଥିରେ ନାହିଁ)

୧-'ଗ' ଋତୁର ଯୋ, 'ଖ'-'ମୋର ଯୋ' ନାହିଁ । ୨-'ଘ' ରସିକମଣେ କେତେ ହେଁ, ୩-'ଖ' ତହୁଁ, ୪-'ଗ' ଦୟା ରଖି ।

ପତି ପୁରେ ହାଗବଲୀ[୫] ନ ପାରିବ ରହି
ଯେତେ[୬] କାଳ କାମ ଧାଡ଼ି ନପାରିବ ସହି[୭] ।୮।

ଗୁଆଂର ପତି ତ ତାର ସେ କି ଜାଣେ ରସ
ତା ରତିରେ ଚନ୍ଦ୍ରମୁଖୀ ନୋହିବ ସନ୍ତୋଷ ।୯।

ମୋ ଭବ ଭବିଣ ଗମା ବଞ୍ଚିଥିବ ଦିନ
ଅନୁକ୍ଷଣେ ବିସ୍ମର ମୁଂ[୮] ନୋହୁଥିବି ମନ[୯] ।୧୦।

ଯେଉଂ ଦିନ ପ୍ରାଣବନ୍ଧୁ ଏ ପୁରେ ଆସିବ
ସକଳ ବେଦନା ମୋହ ଆଗରେ ଭକ୍ଷିବ ।୧୧।

ମୁହିଂ ତାହା ଛାମୁରେ କହିବି କଷ୍ଟ ମୋର
ସତେ ହେ[୧୦] ଚନ୍ଦ୍ରମାମୁଖୀ ଆସିବ ଏ ପୁର[୧୧] ।୧୨।

ଯେଉଂ ଦିନ ଆସିବ ସେଦିନ ଭେଟ ନୋହି
ଶଶୁର ଘରର ଲୋକେ[୧୨] ଥିବେ ତାର ଚହିଂ ।୧୩।

ଆର ଦିନ ଭଗ୍ୟ ଯେତେବେଳେ ଉଦେ ହେବ
ଜଳଦ କୁମୁଦ ପରି ଭେଟ ସିନା ହେବ ।୧୪।

ପର ଭୁଆସୁଣୀ ସେହୁ ଅଟଇ ଯୁଗତେ
ଫରଛା ହୋଇ କି ଧନ ଦେଖାଦେବ ମୋତେ ।୧୫।

ଦୂତିକା ଏକାନ୍ତେ ଯେବେ ଭେଟିବ[୧୩] ଚତୁରୀ
କହିବ ସନ୍ଦେଶ ଗୋପ୍ୟ[୧୪] ପ୍ରୀତିଭବ[୧୫] କରି ।୧୬।

ସମୟ ବୁଝିଣ[୧୬] ବାଳୀ ଦେବ ଥାଙ୍ଗ ମେଳ
ଏ କଥା ସ୍ୱରୂପ ଅଟେ ଆଗତ ମୋହର ।୧୭।

---

୫-'ଗ' ହାଗମାଳୀ, ୬-'ଗ' କେତେ, ୭-'କ', 'ଖ' ପାରିବ ସେ ସହି; ୮-ଘ ବିସ୍ମରଣି ୯-'ଗ' ଅନୁକ୍ଷଣେ ଅନ୍ତରୁ ମୁଂ ନୋହି ଅବିକ୍ଷଣ; ୧୦-'ଝ' ଏ, ୧୧-'ଗ' ଆସିବ ମୋହର; ୧୨- 'ଘ' ଯେବେ; ୧୩-'ଘ' ଦେଖିବ; ୧୪-'ଙ' ଗୋରୀ; ୧୫-'ଙ' ପ୍ରତିଭବ; ୧୬-'ଘ' ସମ୍ପଏ ବୁଝିଲେ ।

ଦେଖିଲେ ସେ ମୋତେ ନିକି ନିର୍ଦ୍ଦୟା ହୋଇବ
ଯେତେ ହେଂ ଆକଟ ଥିଲେ ରତି ଦାନ ଦେବ ।୧୮।

ନବମ ଅବସ୍ଥା ମୋର ତାହାରି ପ୍ରକାଶେ
ଏହା ସେ[୧୭] ଦେଖିଲେ ଦୟା ନ କରିବ କି ସେ ।୧୯।

ଏ ରୂପେ ବିଗ୍ରହି କେତେ ଦିନ ବହିଗଲ[୧୮]
ଶୁକ୍ଳ ଚତୁର୍ଦ୍ଦଶୀ ନିଶି ପ୍ରବେଶ ହୋଇଲ ।୨୦।

କୁମାର ଉତ୍ସବ ହବ[୧୯] ରଜନୀ ଶେଷରେ[୨୦]
ରସିକବର ଶୟନ କରି ଚନ୍ଦ୍ରକରେ ।୨୧।

ତରୁଣୀ ରତନ ହାସ ଚରିତ ଭାବଇ
କ୍ଷଣେ କ୍ଷଣେ ତନୁ କାମେ ପୁଲକିତ ହୋଇ ।୨୨।

ବେଳୁ ବେଳୁ ବଢୁଅଛି ଉତ୍କଣ୍ଠା ସରିତ[୨୧]
ଭସୁଅଛି ମାନସ ତହିଂରେ ଅବିରତ[୨୨] ।୨୩।

କିଛୁ[୨୩] ବେଳ ଅନ୍ତେ ନିଦ୍ରା ପ୍ରବେଶ ନୟନେ[୨୪]
ଦେଖିଲ ରସିକବର ହାସକୁ ସ୍ୱପନେ ।୨୪।

କାଖେ[୨୫] କୁମ୍ଭ ଘେନି ସେ ନଦୀକି ଯିବାବେଳେ
ଭାଗ୍ୟ ବଶୁ ପୁରୁଷ ରତନ ଦେଖି ଡୋଳେ ।୨୫।

ହସି କଥା କହିବାକୁ ନ କହିଲ ସେ ଯେ
ମାନ କଲ ପରି ବାସ ଦେଇ[୨୬] ମୁଖାମ୍ବୁଜେ ।୨୬।

ରସିକ ରତନ ପୁଣି କର ଧରି କହି
ବସିଥାଇ ଗଲ ବାଳୀ ଉତ୍ତର ନ ଦେଇ ।୨୭।

---

୧୭-'ଘ' ଏହାକୁ; ୧୮-'ଘ' ବହିଗଲ ୧୯-'ଘ' ଦିନ, ୨୦-'କ' ରଙ୍ଗ ନିଶେଷରେ; ୨୧-'କ' ଉତ୍କଣ୍ଠ ସରିତ, 'ଖ' ଉତ୍କଣ୍ଠ ସରିତ; 'ଗ'-ଉତ୍କଣ୍ଠା ତାହାର; ୨୨-'ଖ' ଅବିତରଯେ, "ଘ'-ଅପ୍ରମିତ; ୨୩-'ଗ' କେତେ; ୨୪-'ଘ' ଶୟନେ; ୨୫-'ଘ' କରେ; ୨୬-'ଖ' ପରି ଦେଖାହେଲ ।

କାତରେ ନାଗର ପୁଣି ବଚନ ଧଇଲ
ଆଲିଙ୍ଗନ କରିଣ[27] ବଦନେ ଚୁମ୍ବ ଦେଇ[28] ।୨୮।

ଚିବୁକରେ କର ଦେଇ କହେ ଗୁଟୁ ଭଷା
କାହିଁକି ଜୀବନବନ୍ଧୁ କରୁଛୁ ନିରଶା[29] ।୨୯।

ତୋ ବାହାରେ ଆନ ମୋତେ[30] ପ୍ରତିକାର ନାହିଁ
କିଣ୍ଟ ମରିଜନେ କୋପ ଉଚିତ ନୁହଇ ।୩୦।

ତେ, ବିମନ ଦେଖିଲେ ଜୀବନ ଯିବ[31] ସିନା
ଶରଣ ଜନକୁ ନାଶ[32] ନ କର ନବୀନା ।୩୧।

କେତେ ରୂପେ ଅନୁସରି ଲଭିଅଛି ତୋତେ
ତୁ ତ ଜାଣିଅଛୁ ଫେଡ଼ି କହିବି ମୁଂ[33] କେତେ ।୩୨।

ଯେତେ କହି ରସିକ ରତନ ଧରି ପାଦ
ସେହିକ୍ଷଣି ନୟନରୁ ତୁଟିଗଲା ନିଦ ।୩୩।

ଚେତନା ବଶରେ ସେ ସ୍ୱପନ ବୋଲି ଜାଣି
ବିକଳେ ବୋଇଲ ମୋତେ କି କଲୁ ତରୁଣୀ ।୩୪।

କ୍ଷଣକରେ ଅମର ସମ୍ପତି ସୁଖ ଦେଇ
କେଉଁ ଆଡ଼େ ଗଲୁ ଶୋକ ସାଗରେ ଭସାଇ ।୩୫।

ଦରପଣ ପ୍ରତିବିମ୍ବ ପରାୟେ ହୋଇଲୁ
ଦରଶନ ଦେଇ ଆଲିଙ୍ଗନକୁ ନ ଦେଲୁ ।୩୬।

ନିୟମ ତୁ କରିଥିଲୁ ନ ଛାଡ଼ିବୁ ପର
ଯେତେ କାଳେ ନିର୍ଦ୍ଦୟା ହୋଇଲୁ ଆରେ ହାର ।୩୭।

---

୨୭-'ଖ' କରି ତା; ୨୮-'ଘ' କରି ତାର ବଦନ ଚୁମ୍ବିଲ; ୨୯-'ଗ' ଜୀବର ବନ୍ଧୁ କରୁଛୁ ନିଆଶାରେ; ୩୦-'ଘ' ମୋର, ୩୧-'ଗ' ଦେଖି ଜୀବ-ଯିବୁ ଏ ଗୋ; ୩୨-'ଗ' ଜନେ ନିରଶ; ୩୩-'କ' କହିମୁ ।

ଛାଡ଼ିଗଲୁ ଯେବେ[୩୪] ମୋତେ ଉତ୍ତମ ସେ କଲୁ
ମାସକେ ଆସିବି ବୋଲି କାହିଁକି କହିଲୁ ।୩୮।

ସେହି ପ୍ରତି ଆଶାରେ ମୁଁ ଥାଇ ନିରନ୍ତରେ
ଝୁରୁଥାଇ ତୋହ ଭବ[୩୫] ଭବି ଯେକାନ୍ତରେ ।୩୯।

ସଂକେତ ବର୍ଜି ଯିବାରୁ ଆର୍ତ୍ତ ହୋଇଲି
ବିନୟରେ ତୋ ଛାମୁକୁ ଚିଟାଉ ଲେଖିଲି ।୪୦।

ଲେଖି ପଢ଼ି ଦେଇଅଛୁ ଯେଉଂ ପ୍ରତିଭଷା
ତେଣୁ ତୋହ ଆସିବାକୁ ଟେକି ଅଛି ଆଶା ।୪୧।

ରଜନୀ ଶେଷରେ ହେବ ସଂକେତ ଦିବସ
ପୂର୍ଣ୍ଣମୀରେ ନ ଦେଖିଲେ ଖାଇବି ମୁଂ ବିଷ ।୪୨।

ଯେତେ ଭବୁ ଅବଶେଷ ହୋଇଲା ସେ ନିଶି
ଚଣ୍ଡକର[୩୬] ତେଜ ପୂର୍ବ ଦିଗରେ ପ୍ରକାଶି ।୪୩।

ରସିକ ରତନ ଉଠି ନୀତି ବଢ଼ାଇଲା
ମନ ଉଛନରେ କିଛି[୩୭] ଭୋଜନ ନ କଲା ।୪୪।

ପଥ ହେଜି ଧ୍ୟାନ କରି[୩୮] ରହିଲା ହାଗକୁ
ବିଗ୍ରରଇ ଏହିଠାରେ ଭେଟିବି ପ୍ରିୟାକୁ[୩୯] ।୪୫।

ଗ୍ରହୁଂ ଗ୍ରହୁଂ ଦିନ ଦୁଇ ପ୍ରହର ପ୍ରବେଶ
ସନ୍ଦେଶ ନ ପାଇ ଯୁବା ହୁଅଇ ବିରସ ।୪୬।

ଉଠଇ ବସଇ ସେ ଚଞ୍ଚଳ ଚିତ୍ତ କରି
ବୋଲଇ ଆସିବ କେତେବେଳେ ସୁକୁମାରୀ ।୪୭।

---

୩୪-'ଘ' ଛାଡ଼ି ଯେବେ ଗଲୁ ; ୩୫-'ଘ' ତୋ ଭବକୁ; ୩୬-'ଘ' ଚନ୍ଦ୍ରଙ୍କର
୩୭-'ଗ' 'ଘ' କିଛୁ ; ୩୮-'ଗ' ଲଏ କରି, 'ଘ' ଧ୍ୟାଏ କରି, ୩୯-'କ' ହାଗକୁ ।

ବଚନ ଦେଇଛି ସତେ[୪୦] ଆନ କି ହୋଇବ
ପଗଣ ବାନ୍ଧବୀ ଗୋରୀ ଅବଶ ଆସିବ ।୪୮।

ଗହଳ ବଶରୁ ଦେଖି ନ ପାରିବି ପର
ଦୟା ବଶୁଂ ଅବଶ ଗ୍ରହିଂବ ମୋତେ[୪୧] ହାର ।୪୯।

ସମୟ ହୋଇବ ସତେ ବ୍ୟରତୀ ଦେବାକୁ
ବିନୟ ଘେନି[୪୨] ଆସିବ ଦୂତୀ ସଦନକୁ ।୫୦।

ଆସିବା ଯାଏ ପରତେ ନୋହି[୪୩] ମୋ ମନର
ଆୟତ୍ତ କି ଅଛି ତାର ଶଶୁର ଘରର ।୫୧।

କେବଳ ଭ୍ରାଥ ଆଣିଣ ଯାଇଛି ତାହାର
କେ କି[୪୪] ଛାଡ଼ି ନଦେବ ଯେ ଝିଅକୁ ତାଙ୍କର ।୫୨।

ଗୁଡ଼କାର ଜାତିରେ ତ ଅଛି ଯେହୁ ରୀତି
ଶଶୁର ଘରରୁ[୪୫] ପିତା ଲେଡ଼ିଲେ ଆସନ୍ତି[୪୬] ।୫୩।

ମୋଠାରେ ସେ[୪୭] ସୁନ୍ଦରୀର ଅଛି ସନମାନ
ଦୁଇ କଥା ନିମିତ୍ତେ[୪୮] ଆସିବ ମୋର ଧନ ।୫୪।

ନିଗଣ ସେ ଚିତ୍ତେ ମୋତେ[୪୯] ନପାରିବ କରି
ଯେତେ ରୂପେ ତାହାକୁ ମୁଂ ଅଛି ଅନୁସରି ।୫୫।

ପ୍ରୀତି ବୋଲି ପ୍ରତେ ମୋତେ ନୋହୁଅଛି ମନ
ସପ୍ରତେ କରିବି ଯେବେ ଦେଖିବି ନୟନ ।୫୬।

ଯେମନ୍ତେଣ[୫୦] ଯୁବା କାମେ[୫୧] ଉନମତ ହୋଇ
ପ୍ରିୟା ଆସିବାକୁ ଘଡ଼ିଘଡ଼ି ବିସ୍ମରଇ[୫୨] ।୫୭।

---

୪୦-'ଖ' ସେ ତ; ୪୧-'ଘ' ମୋର; ୪୨-'ଗ' ହୋଇ, ୪୩-'ଖ' ନାହିଂ; ୪୪--'ଗ' କି କେ; ୪୫--'ଖ' ଘରକୁ; ୪୬-'କ' ଆସିଲେ; ୪୭-'ଗ' କି ୪୮-'କ' 'ଖ' ନିମତେ; ୪୯-'ଘ' ଚିତ୍ତ ସେଁ କେବେ; ୫୦-'କ' 'ଖ' ଯେମନ୍ତେ ତା ୫୧--'କ' -'ଖ' କାଳେ; ୫୨-'କ' 'ଖ' ଘଡ଼ି ଘଡ଼ିକେ ପକାଇ ।

ବେଳ ଅବସାନ ଦେଖି ହୁଅଇ ଆରତ
ଆଉ କେତେ ବେଳକୁ ଆସିବ ପ୍ରାଣମିତ ।୫୮।

ଯେମନ୍ତ ବିଗ୍ରରି ମନେ ଦିନ ଅବଶେଷ
ସନ୍ଧ୍ୟା ସମୟକୁ ହାଗ ହୋଇଲା ପ୍ରବେଶ ।୫୯।

ଏତି ଜ୍ୟେଷ୍ଠ ଭ୍ରାତ ତାର ଆପଣା ସୋଦର
ପ୍ରବେଶ ହୋଇଲେ ଆସି ଜଣ ଦଶବାର ।୬୦।

ଗୁଡ଼କାର ନଗରରେ ପ୍ରବେଶ ହୋଇଲେ
ଦେଖି ନପାରିଲା ଯୁବା ପ୍ରିୟାକୁ ଗହଳେ ।୬୧।

ରସିକ ସାକ୍ଷାତେ ତାକୁ ନପାରିଲା ଦେଖି
ଯୋଗେ ପାଇଟିବାରୁ ହୋଇଲା ଗ୍ରରି ଆଖି ।୬୨।

ରସିକ ରମଣୀ[୫୩] ସଦନକୁ ଜାଣି ଗଲା[୫୪]
ଯୁବା ଓଛୁକରେ ଦୂତୀ ସନିଧ୍ୟେ ମିଳିଲା ।୬୩।

ବିନୟ ବଚନ ତାକୁ ନାନା ରୂପେ କହି[୫୫]
ହାଗ ସଦନକୁ ବେଗେ ଦେଲା ପଠିଆଇ ।୬୪।

ସେ ଯାଇ ତା ସମୀପେ ହୋଇଲା[୫୬] ପରବେଶ
କର ଧରି ଜଣାଇଲା ରସିକ ସନ୍ଦେଶ ।୬୫।

ବୋଇଲା ତୁ ଯେବେ ଆଜ ନଯିବୁ ମୋ ପୁର[୫୭]
ରସିକ ରତନ ନ ବଞ୍ଚିବ ଜୀବନର[୫୮] ।୬୬।

ତୋ ଆଶାରେ ଭୋଜନ ଶୟନ ଦୂର କରି
ପଥ ହେଜି ଆସିବାକୁ ଅଛି ଅନୁସରି ।୬୭।

---

୫୩-'କ' ରସିକମଣି ୫୪-'ଘ' ଜାଣି ସଦନକୁ ଗଲା; ୫୫-'ଘ' କେହି; ୫୬-'କ' 'ଖ' ହେଲା ; ୫୭-'ଘ' ପୁରେ; ୫୮-'ଘ' ଜୀବନରେ ।

ହଡା ଆସିବା ଦେଖି ମୋତେ ପେଶିଲ ବଦନ[59]
ତୋଷ ହୋଇ[60] ବାଳୀ ତାକୁ ହୋଇବୁ[61] ପ୍ରସନ୍ନ ।୬୮।

ଚିତ୍ତରେ ତୋହର ବାଳୀ[62] ଏ ବିଗ୍ରହ ଥିବ
ଆୟତ ନଥିଲେ[63] ବାଳୀ ଭେଟ ତ ନୋହିବ ।୬୯।

ଆଜ ନିଗଣ କଲେଣି[64] ହତ୍ୟା ହେବ ତୋର
ସମୟ ବୁଝିଣ ଭେଟ ଦିଅ ଗମାବର ।୭୦।

ଭାଗବତୀ ନିଃଶ୍ଚେ ତୁ ଏ କଥା ଦିଅ ଛାଡ଼ି
ରଖ ତାକୁ ବିରହ କାତରେ ଅଛି ବୁଡ଼ି ।୭୧।

ଯେତେ ବେଳ ଆକୁଳେ ତତେ ଧ୍ୟାୟେ ଅଛି କରି
ସ୍ତିରୀ ହୋଇ କେହୁ ତାହା ବୁଝିବ ସୁନ୍ଦରୀ ।୭୨।

ତା ଅକାଣ୍ଡୁ ହସ୍ତ ଧରି କହୁଛି ବହୁତ
ବିଳମ୍ବ ନକରି କହ କି ବିଗ୍ରହି ଚିତ୍ତ ।୭୩।

ଶୁଣି ଗୁଡ଼କାର ସୁତା କାତର[65] ହୋଇଲ
ଦୂତୀକି ବୁଝାଇଣ ସେ ସଙ୍କେତ କହିଲ ।୭୪।

ଯାଇ କହଁ ତାହାଙ୍କୁ ସେ ଥିବେ ତୋର ପୁରେ
ପିତା ପୁରକୁ ଆସିଛି ତାଙ୍କରି ଆଶାରେ ।୭୫।

ତାଙ୍କ ଭେଟ ନୋହିଲେ କି ପ୍ରାଣ ହେବ ସ୍ଥିର ।
କହ ଯାଇ ଦୟା ଥିଲେ ଥିବେ ତୋର ପୁର ।୭୬।

ଏଅନେକ ବାଳୀଠାରୁ ଶୁଣି ଦୂତୀ ଗଲ
ରସିକକୁ କହିଣ ତାର[66] ପୁରେ[67] ରଖିଲ[68] ।୭୭।

---

୫୯-'ଘ' ବଦନ, ୬୦-'ଘ' ତୋଷ କର; ୬୧-'ଘ' ହୋଇଣ; ୬୨-'ଘ' ଅବା; ୬୩-'ଘ' ଆଜ ନ ଦେଖିଲେ ୬୪-'ଘ' କରିଣ; ୬୫-'ଘ' ଆନନ୍ଦ (ଆତୁର), ୬୬-'ଘ' କହି ତାର; ୬୭-'ଙ' ତା ପୁରରେ, ୬୮-'ଘ' ରଖାଇଲ ।

ଶୁଣିଣ ରସିକ ପଥ ଚାହିଁବାରେ ରହି
ଦେଖିଲେଣ ଏହୁଠାରୁ ନେବି ବିଚାରଇ ।୭୮।

ଛନ ଛନ ମନ ହୃଦ ହୋଏ[୬୯] ଦମ ଦମ
ବାଟ ଚାହିଁ ଯୁବତୀକୁ କରୁଅଛି[୭୦] ଧ୍ୟାନ ।୭୯।

ଦୂତୀଠାରୁ ଶୁଣି ହାଗ ଉଦ୍‌ବେଗ ମନ
ସତ୍ୱର ହୋଇଣ ବାଜୀ ବଢ଼ାଇ ଭେଜନ ।୮୦।

ବାଡି ବାଁଟେ ଦୂତୀ ସଦନକୁ ଯିବାବେଳେ
ରସିକ ପାଛୋଟି କର ଧଇଲେକ ବଳେ ।୮୧।

ସୁନ୍ଦରୀ ଜାଣିଣ ତାର ଧଇଲେକ କର
ବେନି ଜଣଙ୍କର ମନ ହୋଇଲା କାତର ।୮୨।

ପୁରେ ପ୍ରବେଶ ହେବାରେ ଯେତେ ଯେତେ ଭାବ
ସୁରସିକେ ତାହା ଆର ଛାନ୍ଦରେ ଶୁଣିବ ।୮୩।

ଦୁର୍ଗା[୭୧] ଦେବୀ ଚର୍ଚ୍ଚିକା[୭୨] ଚରଣେ ନିତ୍ୟ ସେବ
କହେ ଏହା ରାମଚନ୍ଦ୍ର କବି ଚିତ୍ତେ ଭାବ ।୮୪।



୬୯-'ଘ' କରେ, ୭୦-'ଖ' କରିଅଛି; ୭୧-'ଖ' ଦୂର୍ଗା, ୭୨-'କ' ଚାଚିକା, 'ଗ' ଚର୍ଣ୍ଣିକା ।

# ଦଶମ ଛାନ୍ଦ

( ରାଗ : ବଙ୍ଗଳାଶ୍ରୀ )

ରସିକ ରତନ ସାଧୁତ ସୁତାକୁ ବସି ବସାଇଲା କୋଳେ ।
କରେ କର ଧରି ବିନୟ ବଚନ କହଇ ଅତି ବିକଳେ ।୧।

ପରାଣ ବାନ୍ଧବୀ କିଣା ଜନକୁ କି ଏହି ରୂପେ ନିକି କରି
ତେତେ ରୂପରେ ପୀରତି ଘାତ କରି[1] କ୍ଷଣକରେ ଗଲୁ ମାରି ।୨।

ନିଅମ ପର ମୋ ଆଗେ କରିଥିଲୁ ନ ଛାଡ଼ିବି ଥିଲେ ଜୀବେ
ମାସକେ ଆସିବା କଣ୍ଠ ପୁରିଯାଇ କେତେଦିନ ହେଲା ଯେବେ ।୩।

ତୁ ସିନାରେ ଗୋରୀ ପତି ସଙ୍ଗେ ପଡ଼ି ଭୋଳେ ମୋତେ ପସୋରିଲୁ
ମୋର ବେଦନା କି ନ ନାଗିଲା[2] ତୋତେ କାମ[3] ମୁଖେ ଦେଇଗଲୁ ।୪।

ଯେଥି ଉତ୍ତାରୁ ମୁଂ କେମନ୍ତେ ବଞ୍ଚିଲି ଏହା ନ ଘେନିଲୁ ମନେ
ଆସି ନ ପାରିଲେ ବାରତା ଦେଇଣ ସଙ୍ଗୋଳିଲୁ ନାହିଂ ଦିନେ ।୫।

ପାଶେ ଥିଲା ଯାକ ଘେନିଥିଲି[4] ମନେ ତୋ ପର ପୀରତି ନାହିଂ[5]
ଯେଣୁ[6] ଜାଣି ହେଲା ନିଷ୍ଠୁର ଗଣନା ଅପ୍ରିୟାର[7] ଅଟୁ ତୁହି ।୬।

ଆକୁଳ ଯେଣେ ଯେ ହୋଉଥାଇଂ ମୁହିଂ ବିକଳ ନପାଉ ହାର
ବାଳି କାଳକୁ ଅନୁସରି ଥିବାର[8] ପାସୋର ଗଲନି[9] ପର ।୭।

ଯେତେ ନିରଣ ତ କରିବୁ ବୋଲିଣ ପରତେ ନଥିଲା ମୋର
ସ୍ୱଦଶା କରୁଣା ଭଣା କରିଦେଇ ହୃଦୟ କଲୁ ପଥର ।୮।

---

୧—'ଖ' ଘାତ କରି ; ୨—'ଖ', 'ଘ' ନ ଲଗିଲା; ୩—'କ', 'ଖ' କାହା
୪—'କ' 'ଖ' ଘେନିଥିଲୁ; ୫-'ଖ' ଯହିଂ; ୬-'ଘ' ଯେବେ, ୭-'ଘ' ଅପ୍ରିୟାଙ୍କ,
୮-'ଖ' ଥିବାରୁ, ୯-'ଖ' ଗଲଣି ।

ବାନ୍ଥବାର ତୋତେ ଆଶ କରି[୧୦] ମୁଂ ଯେ କହୁଥାଇ ଅନୁସରି[୧୧]
ପୀରତି ଅନ୍ତର ହୋଇଲେ ମନରୁ ପାସୋରିବୁ ନାହିଁ ଗୋରୀ ।୯।

ଫୁଲ ହସ୍ତ ଦେଇ ପ୍ରଥମେ ଶରଣ ଯେଉଂ ଦିନ ତତେ[୧୨] ହେଲି
ଓଷା କୋଠିଠାରେ ପ୍ରମାଣ କରଇ ସୁକୃତ ମୁଂ ଟେକି ଦେଲି ।୧୦।

ବୋଲିଥିଲୁ ଧନ ଜନନୀ ଜନକ ପରେ[୧୩] କରିବେ ପ୍ରଦାନ
ତୋ ମୋହ ପୀରତି ଭିନ୍ନ ଯେ ନୋହିବ ବିଚ୍ଛେଦ ହେଲେ ଦୁଗୁଣ[୧୪] ।୧୧।

ହସ୍ତେ ହସ୍ତ ଧରି କହିଥିଲୁ ମତେ ବେନି ଜନ ପ୍ରାଣ ଥିଲେ
ଏକଥାରେ ଯେବେ[୧୫] ନୋହିବ ଅନ୍ତର ପ୍ରଦାନ ମୁହିଂ ହୋଇଲେ ।୧୨।

ମାସକେ ଆସିବା[୧୬] କଣ୍ଠ ମୁରିଯାଇ ହେଜ ତୁ ହୋଇଲୁ[୧୭] କେତେ
ଅତି ହିଂ ଆକୁଳ ହୋଇଣ ରେ ଧନ ଲେଖ ଲେଖି ଦେଲି[୧୮] ତୋତେ ।୧୩।

ସବୁ କଥାମାନ ଦୂରେଁ ଦୂର କରି ଡ଼ାଳେ ହେ ନିରାଶ କଲୁ
ଅଁଦେହ[୧୯] ଶରକୁ ଦେହ ଦେଇ ମୋର ପତି ସଦନେ ରହିଲୁ ।୧୪।

ଯେବେ ହେ ଚରଣେ ଧରି କହୁଅଛି ଶରଣ ତୋ ପାଦେ ପଶି
ଥିବାରେ ଏଣିକି ଦିନେ ନ ଛାଡ଼ିବୁ ସେବାରେ ଥିବି ସୁକେଶୀ ।୧୫।

ଅଳପ ତୋତେ ନ ଦେଖିଲେ ଦିବସ କଳପ ହୁଅଇ ମତେ
ମନ ସୁଖ ଅଛି କି ନାହିଂ ପୁଣି ତୋ ଚିତ୍ତ କି ଜାଣୁ ତୁ ଚିତ୍ତେ[୨୦] ।୧୬।

ଏ ରୂପେ ଅନେକ ବିନୋଇ କହିଣ ଚରଣରେ ଯୁବା ପଡ଼ି[୨୧]
ଯୁବତୀମଣିକି ରସରେ ରସାଇ ପ୍ରେମ ରସେ ଦୁହେଂ ଜଡ଼ି[୨୨] ।୧୭।

ନାନା ରସ ବନ୍ଧେ କେଳି ସଉବକୁ ଯୁବାକୁ ଯୁବତୀବର
ଚୁମ୍ବ ଆଲିଙ୍ଗନ ଅଧର[୨୩] ଅମୃତ ସନ୍ତୋଷ ବେନି[୨୪] ମନର ।୧୮।

---

୧୦—'ଘ' ଅନୁସରି, ୧୧-'ଘ' କର ଧରି, ୧୨-'ଘ' ତୋର, ୧୩-'କ' ପୁରେ, ୧୪-'ଖ' ଦ୍ୱିଗୁଣ, ୧୫-'ଘ' କେବେ; ୧୬-'ଘ' ଆସି; ୧୭-'ଘ' ହୋଇଗଲ; ୧୮- 'ଗ' ଥିଲି; ୧୯-'ଗ' ଏ କାମ; ୨୦-'କ' ତୁରିତେ, 'ଗ' 'ଘ' ତୋମନ ସୁଖ ଅଛି କି ନାହିଂ ପୁଣି ××× ଜାଣୁ ତୁ ଚିତ୍ତେ; ୨୧-'ଘ' ଚରଣେ ଯୁବା ପଡ଼ିଲ; ୨୨-'ଘ' ରସେ ରସାଇଣ ପ୍ରେମ ରସରେ ବୁଡ଼ିଲ; ୨୩-'କ' ଅଧରେ ୨୪-'ଗ' ଜନ ।

ରତି ସାରି ବେନି ଏକ ସ୍ଥାନେ ବସି ହାର ଯୁବା କର ଧରି
    ଯେତେକ ବିଚ୍ଛେଦ କଷ୍ଟ ପଡ଼ିଅଛି ସମସ୍ତ କହେ ଚତୁରୀ ।୧୯।

ବୋଇଲା ହେ ନାଥ ମନେ ତୁମ୍ଭେ ଅବା ଅନ୍ତର ଧଇଲ ଚିତ୍ତେ
    ତୁମ୍ଭଙ୍କୁ ସତେ ମୁଁ ଛି ନିକି ରହନ୍ତି ମନରେ[25] କରୁଛ[26] ପ୍ରତେ ।୨୦।

ଲୋକ ଆଗ୍ରରକୁ[27] କଳଙ୍କ ଭଷାକୁ ଆନ୍ନତେ[28] ସାନ୍ନଇ ଦିନ
    ମୃତ ଶବ୍ଦ ସିନା ଶାଶୁ ଘରେ[29] ଥିଲି ତୁମ୍ଭ ତହିଁ ଥିଲା ପ୍ରାଣ ।୨୧।

ଜଳ ବିହୀନେ କି ମୀନ ବ୍ରତି ରହେ କୁମୁଦ କି ଚନ୍ଦ୍ର ଛାଡ଼ି
    ଅଣ ଆୟତ୍ତରେ ବିଧାତା ବଶରେ ମାସ କେତେ ଛଡ଼ାଛଡ଼ି ।୨୨।

ଏହି ଅନୁରାଗ ସର୍ବଦା ମୋଠାରେ ଅମୃତ ବଚନ ଥିବ
    କେବେ ହେଂ ମନରେ ଦୁଃଖ ନ କରିବ ନିତି ଦିନ ଭେଟ ହେବ ।୨୩।

ଯିବାକୁ ସରଗେ ମେଲାଣି ହୋଇଲେ ଯିବଇଁ[30] ବହନ ହୋଇ
    ଯାଅ କି ରୂପେ ମୋ ବଚନ କହିଲେ ରସିକ ହସିଲ ହୋଇ[31] ।୨୪।

ବାଳୀ ଅନୁରାଗ ବଚନ ଶୁଣିଣ ଦୁଗୁଣେ ହୃଦେ[32] ହରଷ
    ଆଲିଙ୍ଗନ ପୁଣ ଚୁମ୍ବନ ଦେଇଣ ଭିଡ଼ି ଆଣେ ବାହୁ ପାଶ ।୨୫।

ହୃଦୟେ ଚରଣ ଧରି ଯୁବା ବୋଲେ କହ ତୁ ସତ୍ୟ କରିଣ
    ଅଙ୍ଗ ଛୁଇଁ ମୋର କହ ହାର ବାଳୀ ଭେଟ ହେବ[33] ପ୍ରତିଦିନ ।୨୬।

ପର ଭୁଆସୁଣୀ ହୋଇଛୁ ବୋଲିଣ ଗୃହେ ଗୁପତେ ନଥିବୁ
    ସ୍ନାହାନ ଜଳ ନେବାକୁ[34] ମୋହ ଆଶେ ପୂର୍ବ ବାହାର ହୋଇବୁ ।୨୭।

ଶୁଣିଣ ସୁନ୍ଦରୀ ଯୁବାବର ଭଷା ସନମତ କରିଗଲା
    ଯୁବାବରଂ ଯେଣେ ସନ୍ତୋଷ ହୋଇଣ ନିଜ ପୁରକୁ ଚଳିଲା ।୨୮।

---

୨୫-'ଘ' ମନକୁ; ୨୬-'ଖ' କରିଛ; ୨୭-'ଘ' ଆରମ୍ଭକୁ; ୨୮-'କ', 'ଖ' ଆରମ୍ଭେ; 'ଘ' ସାରମ୍ଭେ; ୨୯-'ଗ' ଶବ ମୋର ସାଧୁ ଘରେ; ୩୦-'ଘ' ଯିବିତ; ୩୧-'ଘ' ହସି କହଇ; ୩୨-'ଖ' ଦ୍ୱିଗୁଣ ହୃଦ; ୩୩-"ଖ' ହାରବାଳୀ ଭେଟ ହେବି; 'ଗ' 'ଘ' ହାରମାଳୀ ଭେଟ ଦେବୁ; ୩୪-'ଖ' ହେବାକୁ ।

ମନେ ଦକ ରଖିଥାଇ[୩୫] ଯୁବାବର କାନ୍ତ ତା ଆସି ନେବାକୁ
କାମ ଭୟକୁ ଦୂର କଲା ରସିକ କରିଣ ସାହା ହାରକୁ[୩୬] ।୨୯।

ଏହି ରୂପରେ[୩୭] କାମରେ ବଶ ହୋଇ ହାରବତୀ ସଙ୍ଗେ ଯୁବା
ରଜନୀ ଦିବସେ ସମୟେ ଜଗିଣ କରିଥାଇ ତାକୁ ସେବା[୩୮] ।୩୦।

ଯେଣେ ଗଲେ ତାକୁ କ୍ଷଣେ ନ ମୁଞ୍ଚଇ[୩୯] ଦେହକୁ ଛାଇ ପରଯେ
ଅଳପ ନୟନୁ ଅନ୍ତର ହୋଇଲେ ମଣଇଂ କଳ୍ପ ପରଯେ ।୩୧।

ପାଣି ଆଣିମାକୁ ସ୍ନାନ ସାରିବାକୁ ଯିବାବେଳେ ନଦୀ ତଟ
ଅନୁଗତ ହୋଇ ଅନୁସରି ଯୁବା ବସି ଗୃହୁଂଥାଇ ବାଟ ।୩୨।

ଦୁହେଂ ଦୁହିଂଙ୍କ ସମୟ ଜଗିବାରେ ନିତି ଦିନ ହୋଏ[୪୦] ମେଳ
ବଦନ ଚୁମ୍ବିଣ ମଦନ ମଦରେ[୪୧] କରିଥାଇ ଯୁବା କୋଳ ।୩୩।

ଅଜ୍ଞାନରେ ପୁଣି ନିଶଙ୍କେ ବସାଇ ରତିରେ ରସିକ ବଳେ
ପୂଛ କରି ତାକୁ ଲକ୍ଷ୍ୟ[୪୨] କରିଥାଇ ଇନ୍ଦ୍ର ପଦ ପାଦ ତଳେ ।୩୪।

ଦିନୁ ଦିନୁ ଅନୁସରିବାରେ ପୁଣ ଅନୁରଗ କାନ୍ତା କରି[୪୩]
ନିଜ କାନ୍ତଙ୍କ ମାନସ ଛଡ଼ାଇଲା ରସିକକୁ ପାଇକରି ।୩୫।

ସମସ୍ତ ପ୍ରସଙ୍ଗ ଦୂର କରି ହେଲେ[୪୪] ଦୁହେଂ ଦୁହିଂଙ୍କର ବଶ
ଯହିଂ ଯେଉଂ କଥା ଇଚ୍ଛଇ ରସିକ ନ କରେ ହାର ନିରାଶ ।୩୬।

ଦିନେ ଦିନକରେ ସୁରତି ସରଧା କରିଣ ରସିକବର
ତରୁଣୀ ମଣିକି ଯେକାନ୍ତେ ଜଗିଣ ଜଣାଇଲା ଯୋଡ଼ି କର ।୩୭।

ବୋଇଲା ହେ ଧନ ଛାମୁରେ ତୋହର କଥାଯେ ଜଣାଏ ମୁହିଂ
ଦିବସ ମାତ୍ରରେ ପୀରତି ଦିନରୁ ମତେ ତ ନ ହେଲୁ ସହୀ[୪୫] ।୩୮।

---

୩୫-'ଗ' ମନେ ରଖିଥାଇ ; ୩୬-'ଗ' ଯୁବତୀ × × × ଏହି କଥା ପର ବିଚାରୁଥାଇ ମନକୁ, 'ଘ' ଯୁବା ହୃଦେ ଯେହି କଥା ବିଚାରି କ୍ଷଣେ ନ ମୁଞ୍ଚେ ଯୁବାକୁ ; ୩୭-'ଗ' ଏହି ମତିରେ ; ୩୮-'ଖ' ପୂଜା ; ୩୯-'ଖ' ନ ମୁଞ୍ଚଇ ; ୪୦-'ଗ' ନିତି ହୋଏ ଅଙ୍ଗ ; ୪୧-'କ', 'ଖ' ମନ୍ଦିରେ ; ୪୨-'କ' ନଖ ; ୪୩-'ଗ' ଦିନୁ ଦିନୁ ସରିବାରେ ତାକୁ ବା ଗୃହ ଅନୁରାଗ କରି ; ୪୪-'ଖ' ହେଲେ ; ୪୫-'ଗ' ତୁହି ।

ପ୍ରତିବେଳେ[46] ସିନା ପ୍ରସନ ହୋଇଣ ନିଶିରେ ହେ ଦିନ ଗଲ୍ଲ[47]
ଦିନ ଅବଶ ମଧ୍ୟ ବେଳ ସମଏ ଭେଟ ଦେବୁ ମତେ ହାର ।୩୯।

ଶୁଣି ବୋଲେ ବାଳୀ[48] ବିପରୀତ କହ ଏହା ଅଛି କେଉଁଠାରେ
ପୀରତି କରିଣ ଦିବସରେ ମତେ ଦେଖିବ ତୁମ୍ଭେ ପାଶରେ ।୪୦।

କୁଳରେ କଳଙ୍କ ସାରିବି କି ଆହେ ତୁମ୍ଭକୁ[49] ହିଂ ନିନ୍ଦା ହେବ
ଜନନୀ ଏ କଥା ଶୁଣିଲେ କର୍ଣ୍ଣେ ଶ୍ୱଶୁର ଘରେ ଛାଡ଼ିବ ।୪୧।

କଥା ପ୍ରଘଟକୁ ମୋତେ ମୁଛିବାକୁ[50] ଏ ନଟ କର ଭିଆଣ
ହସ୍ତ ଧରି ନାଥ କହୁଅଛି ତୁମ୍ଭେ ନ ଧର ସେକଥା ଆନ[51] ।୪୨।

ରସିକା ବଶ ସିଡ଼କାର ନିମନ୍ତେ[52] ରସିକ ଚରଣ ଧରି
ବିନତି ଅତି କରିବାରୁ କ୍ଷଣକେ ପ୍ରସନ ହୋଇଲ୍ଲ ଗୋରୀ ।୪୩।

ପୁରତର[53] ପାର୍ଶ୍ୱରେ ଅଛି ତାର ଯେକଇ ଫୁଲ ବନିକା
ମଧାହ୍ନ ବେଳକୁ ସେଠାକୁ ଯିବାରୁ ସଂକେତ ଦେଲ୍ଲ ବାଳିକା ।୪୪।

ସନ୍ଦେଶ ପାଇ ସେଠାରେ ପରବେଶ ପୁରୁଷ ରତନ ବର
ହାରକୁ ନ ଦେଖି ରସିକ ରତନ[54] ଅଙ୍ଗେ ଜାତ ହୋଏ ଥର ।୪୫।

ଯେତେବେଳେ ଯୁବା ପାଶେ ପରବେଶ ହେଲ୍ଲ ଗୁଡ଼କାର ସୁତା
ଭଣଇ ରସିକ[55] ଆଲିଙ୍ଗନ କଲ କାମେ ହୋଇ ଉନମତ୍ତା[56] ।୪୬।



---

୪୬-'ଗ' ପ୍ରତିଦିନ ; ୪୭-'କ', 'ଖ' ହୋଇଣ ସମୟ ବହିଣ ଗଲ ; ୪୮-'ଗ' ବାଳୀ କହେ ; ୪୯-'କ', 'ଖ' ସାରିବକି ତୁମ୍ଭକୁ ; 'ଗ' ସାରିବ ଯେ ଆହେ ତୁମ୍ଭକୁ ; ୫୦-'ଖ' ମୁଛିବାକୁ ; ୫୧-'ଗ' ତୁମ୍ଭକୁ ନ ଧରିବ ମତେ ଆନ; ୫୨-'ଗ' ରସିକା ସିଡ଼କାର ନ କରିବାରୁ ; ୫୩-'ଗ' ପୁରତରୁ ; ୫୪-'ଗ' ନୟନ ତାରକୁ ଘେନିଣ ; ୫୫-'କ' ଭଣେ କୁମର ରସିକ ; ୫୬-'କ' ମତ୍ତା ।

# 'ହାରାବତୀ' କାବ୍ୟ
# ଓ
# କବି ରାମଚନ୍ଦ୍ର ପଟ୍ଟନାୟକ

କବି ରାମଚନ୍ଦ୍ର ପଟ୍ଟନାୟକ ଏକ ସ୍ୱଳ୍ପଜ୍ଞାତ କବି ପ୍ରତିଭା । ସେ 'ହାରାବତୀ' ଓ 'ଅନୁରାଗବତୀ' ନାମକ ଦୁଇଟି ଛାନ୍ଦ-କାବ୍ୟ ରଚନା କରିଥିବା ଜଣାଯାଏ । ପ୍ରଥମୋକ୍ତ କାବ୍ୟଟି ରାମଚନ୍ଦ୍ର ଏକାକୀ ରଚନା କରିଥିବାବେଳେ ଶେଷୋକ୍ତ କାବ୍ୟଟି ସାନଭାଇ ବିଷ୍ଣୁ ପଟ୍ଟନାୟକଙ୍କ ସହ ମିଳିତ ଭାବେ ରଚନା କରିଛନ୍ତି । ଏହି ମିଳିତ ଉଦ୍ୟମ ସଂପର୍କରେ କବି 'ଅନୁରାଗବତୀ' କାବ୍ୟଟିର ଶେଷ ଛାନ୍ଦରେ ଲେଖିଛନ୍ତି—

"ରାଜକାର୍ଯ୍ୟେ ବନ୍ଦୀ ରହିଥିଲୁ କଟକରେ ।
ଆରମ୍ଭ ଏ ଗୀତକୁ କଲୁ ସେହିଠାରେ ଯେ ॥

ଷଡ଼ ଛାନ୍ଦ ମାତ୍ର ସେ ଠାବରେ ସାରିଥିଲୁ ।
ଉଚ୍ଛୁକରେ ସାନଭାଇ ବିଷ୍ଣୁଠାକୁ ଦେଲୁ ଯେ ॥

ବିଷ୍ଣୁ ଏ ଗୀତକୁ ଦେଖି ଆନନ୍ଦ ହୋଇଲା ।
ଛାନ୍ଦ ପାଞ୍ଚ ଆପେ କରି ଏଥି ମିଶାଇଲା ଯେ ॥

ଆଉ ତ୍ରି ଛାନ୍ଦେ ××× ହୁଅନ୍ତା ଗୀତ ଶେଷ ।
ଆମ୍ଭେ ଆସି ବନ୍ଧୀ ଛୁଟି ହୋଇଲୁ ପ୍ରବେଶ ଯେ ॥

ତିନି ଛାନ୍ଦ ସ୍ୱରସରେ କଲୁ ସମାପତ ।
ଚତୁର୍ଦ୍ଦଶ ଛାନ୍ଦରେଣ ପୂର୍ଣ୍ଣ ହେଲା ଗୀତ ଯେ ॥

(ଅନୁରାଗବତୀ—ଚତୁର୍ଦ୍ଦଶ ଛାନ୍ଦ)

ଏହି ଉଦ୍ଧୃତିରୁ ଜଣାଯାଏ ଯେ କବି ରାମଚନ୍ଦ୍ର କୌଣସି ରାଜନୈତିକ କାରଣରୁ କଟକରେ (ଚତୁର୍ଥ, ପଞ୍ଚମ ଓ ଷଷ୍ଠ ଛାନ୍ଦର ଭଣିତାଗୁଡ଼ିକରେ ନିର୍ଦ୍ଦିଷ୍ଟ ଭାବରେ କଟକର ବାରବାଟୀ ଦୁର୍ଗରେ ବୋଲି ଉଲ୍ଲେଖ ରହିଛି ) ବନ୍ଦୀ ଜୀବନ ଯାପନ କରୁଥିବା କାଳରେ କାବ୍ୟଟିର ପ୍ରଥମ ଛଅଗୋଟି ଛାନ୍ଦ ରଚନା କରି ସାନଭାଇ ବିଷ୍ଣୁ ପଟ୍ଟନାୟକଙ୍କ ନିକଟକୁ ପଠାଇ ଦେବାରେ ସେ ସପ୍ତମ ଛାନ୍ଦଠାରୁ ଏକାଦଶ ଛାନ୍ଦ ପର୍ଯ୍ୟନ୍ତ ସ୍ୱୟଂ ରଚନା କରି ତାହା ସହ ମିଶାଇଥିଲେ; ଏହା ପରେ ରାମଚନ୍ଦ୍ର ବନ୍ଦୀ ଜୀବନରୁ ମୁକ୍ତି ପାଇ ଶେଷ ତିନିଗୋଟି ଛାନ୍ଦ ରଚନା କରି ଚତୁର୍ଦ୍ଦଶ ଛାନ୍ଦରେ କାବ୍ୟଟିକୁ ସମାପନ କରିଥିଲେ । 'ହାରାବତୀ' କାବ୍ୟରୁ କବି ରାମଚନ୍ଦ୍ରଙ୍କର୍ ପରିଚୟ ସଂପର୍କରେ କୌଣସି ବିଶେଷ ସୂଚନା ମିଳୁ ନଥିବା ବେଳେ 'ଅନୁରାଗବତୀ' କାବ୍ୟଟି ଏ ଦୃଷ୍ଟିରୁ ଅତ୍ୟନ୍ତ ମହତ୍ତ୍ୱପୂର୍ଣ୍ଣ । ମାତ୍ର ଦୁର୍ଭାଗ୍ୟର ବିଷୟ ଯେ ଓଡ଼ିଶା ରାଜ୍ୟ ସଂଗ୍ରହାଳୟରେ ସଂରକ୍ଷିତ ଏହାର ଏକମାତ୍ର ପ୍ରତିଲିପିଟିର ଅବସ୍ଥା ବର୍ତ୍ତମାନ ଏତେ ଜୀର୍ଣ୍ଣଶୀର୍ଣ୍ଣ ଯେ ତାହାର ପାଠୋଦ୍ଧାର ସଂପୂର୍ଣ୍ଣ ଅସଂଭବ । ସୁତରାଂ କିଛି ବର୍ଷ ପୂର୍ବେ ପଣ୍ଡିତ ନୀଳମଣି ମିଶ୍ର ଏହି କାବ୍ୟ ଓ ଅନ୍ୟ କେତେକ ପରୋକ୍ଷ ପ୍ରମାଣ ଭିତ୍ତିରେ କବିଙ୍କର ପରିଚୟ ତଥା କାଳନିରୂପଣ ସଂପର୍କରେ ଯେଉଁ ପାଣ୍ଡିତ୍ୟପୂର୍ଣ୍ଣ ଆଲୋଚନା କରିଥିଲେ (ଏଷଣା, ଦ୍ୱାଦଶ ଖଣ୍ଡ : ଜୁନ୍ ୧୯୮୬), ଏଠାରେ ତାହାର ସାହାଯ୍ୟ ନେବା ସମୀଚୀନ ମନେ ହୁଏ ।

'ଅନୁରାଗବତୀ' କାବ୍ୟର ବିଭିନ୍ନ ଛାନ୍ଦର ଶେଷରେ କବି ନିଜର ବଂଶ ପରିଚୟ ତଥା ଗରିମା ସଂପର୍କରେ କେତେକ ସୂଚନା ଦେଇଛନ୍ତି —

"ବଡ଼ଘା ନରନାୟକ ସେବକ
ଭଗୀରଥି ପଟ୍ଟନାୟକ ।

× × ×

ତାହାଙ୍କ ଏକ ସୁତ ରାମଚନ୍ଦ୍ର
କବିକୁଳ-କୁମୁଦ ବନ-ଚନ୍ଦ୍ର
ସ୍ୱ-ରାଜ୍ୟ କାର୍ଯ୍ୟରେ
ଓଲବନ୍ଦୀ ରହି ବାରବାଟୀରେ ।।"

ପୂନଶ୍ଚ

"ବଡ଼ମ୍ବା ବେବର୍ତ୍ତା ଶ୍ରେଷ୍ଠ କୂଳ କଳାକର
ଭଗୀରଥି ପଟ୍ଟନାୟକଙ୍କର କୁମର ଯେ ॥

× × ×

ଜଗତଜନନୀ ଦୁର୍ଗା ଚରଣ–ସେବକ ।
କରଣ ବଂଶାବତଂସ ଧାର୍ମିକ ବିବେକ ଯେ ॥"

(ଚତୁର୍ଦ୍ଦଶ ଛାନ୍ଦ )

ଏହି ଉଦ୍ଧୃତିଗୁଡ଼ିକରୁ ସୂଚନା ମିଳେ ଯେ କବି ରାମଚନ୍ଦ୍ର ବଡ଼ମ୍ବା (ଆଧୁନିକ କଟକ ଜିଲ୍ଲାର ଅନ୍ତର୍ଗତ) ଗଡ଼ର ବେବର୍ତ୍ତା ଭଗୀରଥି ପଟ୍ଟନାୟକଙ୍କ ପୁତ୍ର । ଜଗତ ଜନନୀ ଦେବୀ ଦୁର୍ଗା ତାଙ୍କର ଇଷ୍ଟ ଦେବୀ, । 'ହାରବତୀ' କାବ୍ୟର ବିଭିନ୍ନ ଛାନ୍ଦର ଶେଷରେ (ପଞ୍ଚମ ଛାନ୍ଦ, ସପ୍ତମ ଛାନ୍ଦ, ନବମ ଛାନ୍ଦ) ମଧ୍ୟ କବି ନିଜର ଏହି ଇଷ୍ଟ ଦେବୀଙ୍କୁ ଚିନ୍ତା କରିଥିବା ଲକ୍ଷ୍ୟ କରଯାଏ ।

ବେବର୍ତ୍ତା ଭଗୀରଥି ପଟ୍ଟନାୟକଙ୍କର ରାମଚନ୍ଦ୍ର ବ୍ୟତୀତ ଚନ୍ଦ୍ରଶେଖର, ବିଷ୍ଣୁ, ଗଦାଧର ଆଦି ଅନ୍ୟ କେତେକ ପୁତ୍ର ଥିବାର ଜଣାଯାଏ । ଏମାନେ ପ୍ରତ୍ୟେକ ସାହିତ୍ୟ, ଗଣିତ, ଜ୍ୟୋତିଷ ଆଦି ଭିନ୍ନ ଭିନ୍ନ ବିଦ୍ୟାରେ ପାରଙ୍ଗମ ଥିଲେ । ଓଡ଼ିଆ ଓ ସଂସ୍କୃତ ଭଷାରେ ବହୁ କାବ୍ୟ କବିତା ମଧ୍ୟ ଏମାନେ ରଚନା କରିଥିବା ପ୍ରମାଣ ମିଳେ । ଚନ୍ଦ୍ରଶେଖର ପଟ୍ଟନାୟକଙ୍କର ନାମ ଭଣିତାରେ 'ଲୀଳାବତୀ ବିସ୍ତର' ନାମକ 'ଲୀଳାବତୀ' ଗ୍ରନ୍ଥର ଏକ ଟୀକା ଓଡ଼ିଶା ରାଜ୍ୟ ଜୟଦେବ ସଂଗ୍ରହାଳୟର ପୋଥି ଭଣ୍ଡାରରେ ସଂରକ୍ଷିତ । ଏଥିରେ ଚନ୍ଦ୍ରଶେଖର ନିଜର ପିତା ଭଗୀରଥିଙ୍କୁ ସ୍ମରଣ କରିବା ସଙ୍ଗେ ସଙ୍ଗେ ମାତାଙ୍କ ନାମ ଗୌତମୀ ବୋଲି ଉଲ୍ଲେଖ କରିଛନ୍ତି । ଏହା ବ୍ୟତୀତ ସେ 'କଂସ ପ୍ରମୋଦ' ନାମକ ସ୍ୱକୀୟ କାବ୍ୟକୃତି ସଂପର୍କରେ ସୂଚନା ମଧ୍ୟ ଦେଇଛନ୍ତି । 'ଅନୁରାଗବତୀ' କାବ୍ୟର ସପ୍ତମ ଛାନ୍ଦଠାରୁ ଏକାଦଶ ଛାନ୍ଦପର୍ଯ୍ୟନ୍ତ 'ରାମଚନ୍ଦ୍ର'ଙ୍କର ସାନ ଭାଇ ବିଷ୍ଣୁ ପଟ୍ଟନାୟକଙ୍କ କବିତ୍ୱର ପ୍ରମାଣ । ରାଜ୍ୟ

ସଂଗ୍ରହାଳୟ ପୋଥ ଭଣ୍ଡାରର 'ରବୀନ୍ଦୁ ଗ୍ରହଣ' ଓ 'ରସକଲ୍ପଲତା' ପୋଥି ଦ୍ୱୟ ତାହାର ସ୍ରଷ୍ଟା ଭଗୀରଥି ପଟ୍ଟନାୟକଙ୍କ କନିଷ୍ଠ ପୁତ୍ର ଗଦାଧର ପଟ୍ଟନାୟକଙ୍କର *ବିଦ୍‌ବତ୍ତାର ଚିହ୍ନ । ଗଦାଧର ପଟ୍ଟନାୟକଙ୍କର କନିଷ୍ଠ ପୁତ୍ର ଅର୍ଥାତ୍ ଭଗୀରଥିଙ୍କର ପୌତ୍ର କରୁଣାକର ପଟ୍ଟନାୟକ ମଧ୍ୟ ('କୃଷ୍ଣରସାମୃତ'ର ଲେଖକ) ଜଣେ ପ୍ରତିଭାଶାଳୀ କବି ଥିଲେ ।

ରାମଚନ୍ଦ୍ରଙ୍କର ଭ୍ରାତା ଚନ୍ଦ୍ରଶେଖର ପଟ୍ଟନାୟକ କୃତ 'ଲୀଳାବତୀ ବିସ୍ତର' ଗ୍ରନ୍ଥର ସୂଚନା ଅନୁଯାୟୀ ତାହା "ବାଣାବଧିଦନ୍ତି ବେଦ ପମିତେ ଯୁଗାବ୍ଦେ" ରଚିତ । ପଣ୍ଡିତ ନୀଳମଣି ମିଶ୍ରଙ୍କର ଗଣନାନୁଯାୟୀ (ବାଣ=ପାଞ୍ଚ, ଅବ୍‌ଧି=ଚାରି, ଦନ୍ତୀ=ଆଠ, ଏବଂ ବେଦ=ଚାରି ଯୁଗାବ୍ଦ ବା 'ଅଙ୍କାନାଂ ବାମତୋ ଗତିଃ' ନିୟମରେ ଯୁଗାବ୍ଦ ୪୮୪୫ । ଏହି ସାଂକେତିକ ରଚନାକାଳଟି ହେଉଛି ଯୁଗାବ୍ଦ ୪୮୪୫ ବା ଖ୍ରୀଷ୍ଟାବ୍ଦ ୧୭୪୪ । ଏଷଣା-୧୨ଶ/୧୯୮୬/ପୃ. ୭୭) ସୁତରାଂ 'ହାରବତୀ' ଓ 'ଅନୁରାଗବତୀ' କାବ୍ୟ ଦ୍ୱୟ ଏହି ସମୟରେ ଅର୍ଥାତ୍ ଖ୍ରୀଷ୍ଟୀୟ ଅଷ୍ଟାଦଶ ଶତାବ୍ଦୀର ମଧ୍ୟ ଭାଗରେ ରଚିତ ହୋଇଥିବା ସମ୍ଭବ ।

ଦଶ ଛାନ୍ଦ-ବିଶିଷ୍ଟ 'ହାରବତୀ' କାବ୍ୟ ରାମଚନ୍ଦ୍ରଙ୍କ ପ୍ରତିଭାର ଉତ୍କୃଷ୍ଟ ପରିଚାୟକ । କାବ୍ୟ ରଚନା କ୍ଷେତ୍ରରେ ଗତାନୁଗତିକ ଶଗଡ଼ ଗୁଳା ପରିହାର ପୂର୍ବକ ଏକ ନୂତନ ରୀତି ସୃଷ୍ଟି କରିବାରେ ଏହା ସମର୍ଥ ହୋଇଛି । ଏହି ବିଶେଷତ୍ୱ ତାହାର ବୃତ୍ତ ପରିକଳ୍ପନା, ନାୟକ ନାୟିକା ନିର୍ବାଚନ,

---

* "ବୃହଦାମ୍ର ଦୁର୍ଗ ବ୍ୟବହର୍ତ୍ତା ଭଗୀରଥି ସୁପଟ୍ଟନାୟକ, କରଣକୁଳ କୁମୁଦ-ସୁଧାକର ସକଳ ଗୁଣ ଘାୟକ । ତାହାଙ୍କ କନିଷ୍ଠ-ସୁତ ଗଦାଧର ପଟ୍ଟନାୟିକ ଖ୍ୟାତ, କରୁଣାକର ନାମଧେୟ ମୋହର ଏହାଙ୍କ କନିଷ୍ଠ ସୁତ"— କୃଷ୍ଣରସାମୃତ : କରୁଣାକର ପଟ୍ଟନାୟକ । ପ୍ରକାଶକ—ରାଜ୍ୟ ସଂସ୍କୃତି ବିଭାଗ ।

ଅନାଳଙ୍କାରିକ ରଚନା ଶୈଳୀ ଆଦି ବିବିଧ କାବ୍ୟ-ଉପାଦାନମାନଙ୍କରେ ପ୍ରକାଶିତ । ଓଡ଼ିଆ ସାହିତ୍ୟର ଉପାଦ୍ୟ ଛାନ୍ଦ-କାବ୍ୟର ଦୀର୍ଘ ଇତିହାସରେ 'ହାଗବତୀ' କାବ୍ୟ ବୃତ୍ତ ଏକ ସଂପୂର୍ଣ୍ଣ ଭିନ୍ନ ପରିକଳ୍ପନା । ଏଥିରେ ପାରଂପରିକ ବୃତ୍ତ-ନକ୍ସାର ଅନୁସରଣ ନାହିଁ; ଅତିଲୌକିକ ବା ଅଲୌକିକ ଘଟଣାବଳୀର ବର୍ଣ୍ଣନା ନାହିଁ । ଏକ ସଂପୂର୍ଣ୍ଣ ଗ୍ରାମ୍ୟ ସମାଜର ପୃଷ୍ଠଭୂମିରେ ଏହା ପରିକଳ୍ପିତ ହୋଇଛି । ଗାଁ ଗହଳର ଦୁଇଜଣ ଯୁବକ-ଯୁବତୀଙ୍କର ପ୍ରେମ କାହାଣୀ ହିଁ ଏହାର ଆଧାର । ଗୁଡ଼କାର (ଗୁଡ଼ିଆ) କୁଳର ଦ୍ୱାଦଶ ବର୍ଷୀୟା ବାଳିକା ହାଗବତୀ ରୂପରେ ତାହାରି ଗ୍ରାମର ଏକ ସାଧାରଣ ପରିବାରର ଜନୈକ ଯୁବକ (କୁଳ ଓ ନାମର ଉଲ୍ଲେଖ ନାହିଁ) ମୁଗ୍ଧ ହୋଇ ପ୍ରୀତି ଲାଳସାରେ ବହୁବାର ଏକାନ୍ତରେ ତାହାକୁ ଭେଟି ମନାଇବାକୁ ଚେଷ୍ଟା କରିଥିଲେ ହେଁ ବ୍ୟର୍ଥ ହୋଇଥିଲା । ହାଗବତୀ ଥରେ ଏକ ଓଷା ପାଳିବା ଅବସରରେ ଗଭୀର ପୁଷ୍କରିଣୀ ମଧ୍ୟରୁ ତାହାର ଆକାଙ୍କ୍ଷିତ "କୁମୁଦ କମଳ" ଆଦି ପୁଷ୍ପ ତୋଳି ଦେଇ ଯୁବକ ତାହାର ମନ ଜୟ କରିବାକୁ ସକ୍ଷମ ହେଲା । (ପ୍ରଥମ ଛାନ୍ଦ) । ସେହି ଦିନ ଗଡ଼ ପହରକ ସମୟରେ ଓଷା କୋଠୀଠାରେ ଦୁହେଁ ମିଳିତ ହେଲେ ଓ ଦିନକୁ ଦିନ ସେମାନଙ୍କର ପ୍ରୀତି ଭାବ ବଢ଼ିବାକୁ ଲାଗିଲା । (ଦ୍ୱିତୀୟ ଛାନ୍ଦ)

କ୍ରମେ ହାଗବତୀ ତ୍ରୟୋଦଶ ବର୍ଷ ବୟସରେ ପଦାର୍ପଣ କଲା । ତା'ର ପିତାମାତା "ସମାନ କୁଳରୁ (ଗୁଡ଼ିଆ କୁଳ) ବର ବରି ଆଣି" ହାଗବତୀକୁ ତାହା ହସ୍ତରେ ପ୍ରଦାନ କଲେ । କନ୍ୟା ଗୃହରେ ବିବାହ ଉତ୍ସବର ଗହଳ ଚହଳ ମଧ୍ୟରେ ରସିକ, ହାଗବତୀର ଦେଖା ନ ପାଇ ବ୍ୟାକୁଳ ହୋଇ ଉଠିଲା । କନ୍ୟା ପ୍ରାପ୍ତବୟସ୍କା ହେବା ପର୍ଯ୍ୟନ୍ତ ପିତୃଗୃହରେ ରହିବା ବିଧି ଥିବାରୁ ତାହାର ସ୍ୱାମୀ ସପ୍ତମଙ୍ଗଳା ପରେ ନିଜ ଘରକୁ ବାହୁଡ଼ି ଗଲା । ଏହା ପରେ ବିବାହିତା ହାଗବତୀ ସଙ୍କୋଚ ଭାବ କାରଣରୁ ରସିକ ସହ ମିଳିତ ହେଲା ନାହିଁ । ସୁତରାଂ ଯୁବକର ବିରହ ବେଦନା ବଢ଼ିବାକୁ ଲାଗିଲା । ମନ ଅସ୍ଥିର ହେବାରୁ ସେ ଏକ ବିଧବା ନାରୀକୁ ଦୂତୀ ରୂପେ ହାଗବତୀ ନିକଟକୁ ପ୍ରେରଣ କରି ନିଜର ଅନ୍ତର୍ଦ୍ଦାହ ଜଣାନ୍ତେ ହାଗବତୀ

ଦୂତୀ ପୁରରେ ତାହାଙ୍କୁ ସାକ୍ଷାତ କଲା ଓ ଉଭୟଙ୍କର ଗୋପନ ମିଳନ ସେହି ଦିନଠାରୁ ପ୍ରତ୍ୟହ ସେହି ସ୍ଥାନରେ ସଂଘଟିତ ହେବାକୁ ଲାଗିଲା । (ତୃତୀୟ ଛାନ୍ଦ) ଏହା ମଧ୍ୟରେ ଭାଗବତୀ ଯୌବନାବସ୍ଥା ପ୍ରାପ୍ତ ହେଲା । ଦୂତୀର ସହାୟତାରେ ଉଭୟେ ମିଳିତ ହେଲେ ଓ ଭାଗବତୀ ଦେହ ଦାନ କରି ନାୟକକୁ ତୁଷ୍ଟ କଲା । [ଚତୁର୍ଥ ଛାନ୍ଦ]

କିଛି ଦିନ ଉତ୍ତାରେ ଭାଗବତୀ ଏକ ମାସ କଣ୍ଠ ଦେଇ ରସିକ ନାଗରଠାରୁ ବିଦାୟ ନେଇ ଶ୍ୱଶୁରାଳୟକୁ ଚାଲିଗଲା । (ପଞ୍ଚମ ଛାନ୍ଦ) ଯୁବକ୍ ବିଚ୍ଛେଦ ବେଦନା ମଧ୍ୟରେ ଭାଗବତୀର ଗୁଣ ଗୁଣି କାଳ ଯାପନ କରିବାକୁ ଲାଗିଲା । (ଷଷ୍ଠ ଛାନ୍ଦ) ପରିଶେଷରେ ସେ ଦୂତୀ ହସ୍ତରେ ଭାଗବତୀ ନିକଟକୁ ଚିଟାଉଟିଏ ପ୍ରେରଣ କରି ଶ୍ୱଶୁରାଳୟରୁ ଖୁବ୍ ଶୀଘ୍ର ପିତ୍ରାଳୟକୁ ଆସିବାକୁ ଅନୁରୋଧ ଜଣାଇଲା । ପତ୍ର ପାଇ ଭାଗବତୀ କୁମାର ପୂର୍ଣ୍ଣମୀ ଦିନ ଆସିବ ବୋଲି ଦୂତୀ ହସ୍ତରେ ଯୁବକ ନିକଟକୁ ପ୍ରତ୍ୟୁତ୍ତର ପଠାଇଲା । (ସପ୍ତମ ଛାନ୍ଦ) ଏହାପରେ ଯୁବାବର କଣ୍ଠ ଦିବସକୁ ଗୁହି ଗୁହିଁ ପ୍ରାଣପ୍ରିୟାର ଅନୁଚିନ୍ତା ମଧ୍ୟରେ ସମୟ ଅତିବାହିତ କରିବାକୁ ଲାଗିଲା । (ଅଷ୍ଟମ ଛାନ୍ଦ) ବରଷା ଅନ୍ତେ ଶରତ ଋତୁ ଆସିଲା ଓ କଣ୍ଠ ଦିନ ଉପସ୍ଥିତ ହେଲା । ବାକ୍ୟ ରକ୍ଷା କରି ସେହି ଦିନ ସଂଧ୍ୟା ବେଳକୁ ଭାଗବତୀ ପିତାପୁରରେ ଆସି ପହଞ୍ଚିଲା । ଦୂତୀର ସହାୟତାରେ ସେହି ଦିନ ରାତ୍ରରେ ଉଭୟେ ମିଳିତ ହେଲେ । (ନବମ ଛାନ୍ଦ) ଦୀର୍ଘକାଳୀନ ବିଚ୍ଛେଦ ବେଦନାର ଅନ୍ତ ହେଲା ଓ ଉଭୟେ କାମକ୍ରୀଡ଼ାରେ ମଜ୍ଜିଗଲେ । ଏହି ରୂପେ ପ୍ରତିଦିନ ଉଭୟେ ମିଳିତ ହୁଅନ୍ତେ ଭାଗବତୀ କ୍ରମେ ନିଜ କାନ୍ତଠାରୁ ମନ ଛଡ଼ାଇ ରସିକ ନାଗରର ବଶୀଭୂତ ହୋଇଗଲା ।

(ଦଶମ ଛାନ୍ଦ)

'ଭାଗବତୀ' କାବ୍ୟ ତତ୍କାଳୀନ ପାରଂପରିକ ପ୍ରଣୟ କାହାଣୀ ପରିବର୍ତ୍ତେ ଅପ୍ରାପ୍ତ ବୟସ୍କ ଚପଳମତି କିଶୋର-କିଶୋରୀଙ୍କର ପ୍ରୀତି ଓ ବିବାହିତା ଯୁବତୀର ପରପୁରୁଷ ସହ ଦୈହିକ ସଂପର୍କ ପ୍ରସଙ୍ଗ ବର୍ଣ୍ଣନା କରିଛି । ପୁନଶ୍ଚ, ଗାଁ ଗହଳିର ଚିତ୍ର ତଥା ଗଣ ଜୀବନକୁ ସ୍ୱୀକୃତି ପ୍ରଦାନ କରି ଭାଗବତୀ ଏକ ନୂତନ ପରମ୍ପରା ମଧ୍ୟ ସୃଷ୍ଟି କରିଥିବା ଲକ୍ଷ୍ୟ କରଯାଏ । ଏ ଦୃଷ୍ଟିରୁ ଏହାର କଥାଭାଗ ଅନନ୍ୟ ।

ତତ୍‌କାଳୀନ ପ୍ରଚଳିତ ରୀତିରେ କେବଳ ଆଭିଜାତ୍ୟ-ସଂପନ୍ନ ଗୁଣବାନ୍ ମୁଖ୍ୟ ଚରିତ୍ର କାବ୍ୟରେ ଗୃହୀତ ହେଉଥିଲ । ସାଧାରଣ ନରନାରୀଙ୍କ ପାଇଁ କାବ୍ୟାଙ୍ଗନ ଥିଲ ଏକପ୍ରକାର ନିଷିଦ୍ଧାଞ୍ଚଳ । କବିକର୍ମ ମଧ୍ୟରୁ 'ଅଙ୍କ', 'ପ୍ରକରଣା'ଦି ଦୃଶ୍ୟକାବ୍ୟର ଅଳ୍ପ କେତେକ ବିଭାଗରେ ମାତ୍ର ସାଧାରଣ ନର ନାରୀ ସ୍ଥାନ ପାଉଥିଲେ ମଧ୍ୟ ଛାନ୍ଦ କାବ୍ୟର ନାୟକ ନାୟିକା ହେଉଥିଲେ କେବଳ ଦେବ-ଦେବୀ ଅଥବା ରାଜା-ରାଣୀ, ରାଜପୁତ୍ର ରାଜକନ୍ୟା । କିନ୍ତୁ 'ଭାଗବତୀ' କାବ୍ୟର ନାୟକ ଗାଁ ଗହଳିର ସାଧାରଣ ପରିବାରର ଏକ ଯୁବକ ଓ ନାୟିକା ଗୁଡ଼ିଆ ଘରର ଝିଅ । ପୁଣି ନାୟକ ଅଳଙ୍କାର ଶାସ୍ତ୍ର ସମ୍ମତ କୌଣସି ସଦ୍‌ବଂଶଜ ଧୀ । ସଜ୍ଜନ ନୁହେଁ—ଏକ ଲମ୍ପଟ ପୁରୁଷ ଓ ନାୟିକା ପରପୁରୁଷାସକ୍ତ ।

ମଧ୍ୟଯୁଗୀୟ କାବ୍ୟଗୁଡ଼ିକ ରତ୍ୟାଦି ଭାବର ଉଦ୍ଦୀପନ ବିଭାବ ରୂପେ ଷଡ଼ ଋତୁ, ସନ୍ଧ୍ୟା, ସୂର୍ଯ୍ୟୋଦୟ, ଉପବନାଦି ପ୍ରକୃତିର ବିବିଧ ଦୃଶ୍ୟାବଳି ବର୍ଣ୍ଣନାରେ ଭାରାକ୍ରାନ୍ତ ହୋଇଥିବା ବେଳେ 'ଭାଗବତୀ'ରେ ଏସବୁର ବର୍ଣ୍ଣନା ଅତ୍ୟନ୍ତ ସୀମିତ ତଥା ସଂକ୍ଷିପ୍ତ । ଷଡ଼ଋତୁ ମଧ୍ୟରୁ କେବଳ ଶରତ ଋତୁର ଏକ ସଂକ୍ଷିପ୍ତ ବର୍ଣ୍ଣନା ପ୍ରଦାନ କରି କବି ନିଜର ପ୍ରକୃତି ବର୍ଣ୍ଣନା ସମ୍ପର୍କିତ କର୍ତ୍ତବ୍ୟ ଶେଷ କରିଛନ୍ତି—

"ଯେଥୁ ଅନନ୍ତରେ ଶୁଣ ରସିକ ନାଗର,  
ଧରଣୀକି ମଣ୍ଡିଲ ଶରଦ ଋତୁ ମୋର ।୧।  
ମାଳତୀ ସୁଗନ୍ଧ ଘେନି ପବନ ବହିଲ,  
ବିରହୀ ହୃଦୟ କାମ ଅନଳ ଦହିଲ ।୨।  
ଚନ୍ଦ୍ରକରେ ଦିଶିଲ ସୁନ୍ଦର ଦଶଦିଶ,  
ଜଳେ କୁମୁଦ କମଳ ହୋଇଲ ପ୍ରକାଶ ।୩। (ନବମ ଛାନ୍ଦ)

ଏତଦ୍‌ଭିନ୍ନ ବର୍ଷାଋତୁ (୮ମ ଛାନ୍ଦ), ସନ୍ଧ୍ୟା (୭ମ ଛାନ୍ଦ), ସୂର୍ଯ୍ୟୋଦୟ (୯ମ ଛାନ୍ଦ) ଆଦିର ବର୍ଣ୍ଣନା ନିମିତ୍ତ କଥାବସ୍ତୁ ମଧ୍ୟରେ ଅବସର ଥିଲେହେଁ କବି ତାହାକୁ ଏଡ଼ାଇ ଯାଇଛନ୍ତି । ଏହା ସତ୍ତ୍ୱେ କାବ୍ୟ ମଧ୍ୟରେ ସମ୍ଭୋଗ ଓ ବିପ୍ରଲମ୍ଭ ଶୃଙ୍ଗାର ବର୍ଣ୍ଣନାର ଚମତ୍କାରିତା ନ୍ୟୂନ ହୋଇନାହିଁ । ନାୟିକା ବିରହକାତର

ନାୟକର ଅନୁଚିନ୍ତାର ବିସ୍ତୃତ ବର୍ଣ୍ଣନା କବି ପ୍ରଦାନ କରିଛନ୍ତି । ମାତ୍ର ନାୟିକାର ବିରହ ବେଦନାର ଚିତ୍ର ଗ୍ରନ୍ଥ ମଧ୍ୟରେ କୁତ୍ରାପି ସ୍ଥାନ ପାଇ ନଥିବା ଏକ ଲକ୍ଷ୍ୟଣୀୟ ପ୍ରସଙ୍ଗ, ଅବଶ୍ୟ ନାୟିକା କାବ୍ୟର ପ୍ରଥମ ପର୍ଯ୍ୟାୟରେ ରତି-ଅନଭିଜ୍ଞା ଥିବା ବେଳେ ଏବଂ ଦ୍ୱିତୀୟ ପର୍ଯ୍ୟାୟରେ ସ୍ୱାମୀ ପୁରରେ ଥିବାରୁ ଏହା ବର୍ଣ୍ଣିତ ନ ହେବା ଅର୍ଥପୂର୍ଣ୍ଣ ।

ଅନ୍ୟାନ୍ୟ ମଧ୍ୟଯୁଗୀୟ କବିମାନଙ୍କ ସଦୃଶ ରାମଚନ୍ଦ୍ର ମଧ୍ୟ ନାୟିକାର ଅଙ୍ଗ ସୌଷ୍ଠବ ବର୍ଣ୍ଣନାରେ ପ୍ରବୃତ୍ତ ହୋଇଛନ୍ତି । ମାତ୍ର ଏଗୁଡ଼ିକ ବାହୁଲ୍ୟ ଦୋଷଦୁଷ୍ଟ ନୁହେଁ, ଅତ୍ୟନ୍ତ ସଂକ୍ଷିପ୍ତ । ତଥାପି ଦ୍ୱାଦଶ ବର୍ଷିୟା ଓ ତ୍ରୟୋଦଶ ବର୍ଷିୟା ହାରବତୀର ରୂପ ବର୍ଣ୍ଣନା ବୈଚିତ୍ର୍ୟପୂର୍ଣ୍ଣ ହୋଇଛି—

ଦ୍ୱାଦଶ ବର୍ଷିୟା ହାରବତୀର ରୂପ :

"ତହିଁ ଅତି ଶୋଭା ଅଟେ ଗୁଡ଼କାର ବାଳୀ ।
ତାରାଗଣ ମଧ୍ୟରେ କି ଚନ୍ଦ୍ର କରେ କେଳି ଯେ ॥

କାମ ଦେଖି ମୋହି ହେବ ନାମ ତାର ହାର ।
ଯୁବାଜନ ମାନଙ୍କ ନୟନ ବନ୍ଦୀ କାର ଯେ ॥

ପରବେଶ ହୋଇଅଛି ଦ୍ୱାଦଶ ବରଷ ।
ଯୁବା ନୋହି ଯୁବା ରୂପ ବଚନ ସାରସ ଯେ ॥

ଉରେ ତାର ଅଙ୍କୁରିଛି ଅଳପ ଉରଜ ।
ମଦନ କି ଉଆଁଇଛି ଶିବଜୟ ସଜ ହେ ॥

ଯହିଁ ବଙ୍କେ ବଚନୁ ତା ନୟନ ଚତୁରୀ ।
ଲୋକନରେ ଯୁବା ହୃଦ ପକାଏ କତୁରି ଯେ ॥

ଉଭା ହେଲେ ଶୋଭା ଦିଶୁଥାଇ ଶଶାଙ୍କର ।
ଗମନରେ ମଣ୍ଡୁଥାଇ ଧରଣୀ ନିକର ଯେ ॥

ଅନଙ୍ଗ ମୋହନ ଶର ପରାୟେ ସୁନ୍ଦର ।
ଅନାଇଲେ ରଙ୍ଗେ ମୋହ ହେବ ପୁରନ୍ଦର ଯେ ॥

(ପ୍ରଥମ ଛାନ୍ଦ । ୭-୧୩)

ତ୍ରୟୋଦଶ ବର୍ଷିୟା ଭାଗବତୀର ରୂପ (ବୟଃସନ୍ଧି) :

"ଏମନ୍ତେ ଦିନକୁ ଦିନ ବଳିବାରୁ ବରଷ ତେର ହୋଇଲା ।
ଶରଦ ଚନ୍ଦ୍ରମା ପରି ଚନ୍ଦ୍ରମୁହାଁ ଅତି ସୁନ୍ଦର ଦିଶିଲା ।।
ନାଗର ମନକୁ ହରି ନେଲା ସ୍ତନ ନାଗରଙ୍ଗ ପରି ତାର ।
ଲଜ୍ଜିତ ସୁବାହୁ ବର୍ଜିତ ହୋଇଣ ରତି ରହିଲା ନଗର ।।
ଅଙ୍ଗ ଚଞ୍ଚଳ ଉଡ଼ିବା ଭଙ୍ଗୀ ଜାଣି ଚଞ୍ଚଳ ନୟନ ହେଲା ।
ଯୁବା ଜୟ ଭବ ଯୁବା ଅଭିମୁଖ ଯୁବତୀବର ହୋଇଲା ।।

(ତୃତୀୟ ଛାନ୍ଦ । ୧୭-୧୯)

ଦେଶ ଭଷାରେ ରଚିତ କାବ୍ୟକୃତିଗୁଡ଼ିକ ପ୍ରତି ସଂସ୍କୃତାଭିମାନୀ ପଣ୍ଡିତମାନଙ୍କ ଆକ୍ଷେପ ମଧ୍ୟଯୁଗୀୟ କବିର ମନକୁ ତା'ର କାବ୍ୟକୁ ସଂସ୍କୃତ କାବ୍ୟର ସମକକ୍ଷ କରିବା ପାଇଁ ପ୍ରରୋଚିତ କରିଥିଲା । ସଂସ୍କୃତ ଭଷା ଓ ସାହିତ୍ୟ ଚର୍ଚ୍ଚାକୁ ଆଭିଜାତ୍ୟର ପ୍ରତୀକ ରୂପେ ବିଗ୍ରହ କରୁଥିବା ଓଡ଼ିଆ କାବ୍ୟର ପୃଷ୍ଠପୋଷକ ଅଭିଜାତ ଗୋଷ୍ଠୀ ଓ ବିଦ୍ୱାନମାନଙ୍କର ମଧ୍ୟ ଏହା ହିଁ ଥିଲା ରୁଚି ଅନୁକୂଳ । ସୁତରାଂ ଏହି କାଳର ଓଡ଼ିଆ କାବ୍ୟକୃତିର ଆଦର୍ଶ ହେଲା ସଂସ୍କୃତ ଅଳଙ୍କାର ଶାସ୍ତ୍ର ଓ କାବ୍ୟ କବିତା । ପରିଣାମ ସ୍ୱରୂପ ଏହାର ରୀତିନୀତି ତ ସଂସ୍କୃତାନୁସାରୀ ହେଲା, ଭଷାରେ ମଧ୍ୟ ତତ୍ସମ ଶବ୍ଦାବଳୀର ପ୍ରୟୋଗ ବୃଦ୍ଧି ପାଇଲା । ତେଣୁ ଓଡ଼ିଆ ଛାନ୍ଦ କାବ୍ୟ ସାଧାରଣ ଜନତାର ଦୁର୍ବୋଧ୍ୟ ହେବାକୁ ଲାଗିଲା । ଏହି ଦୁର୍ବୋଧ୍ୟତାକୁ ତ୍ୱରାନ୍ୱିତ କରିଥିଲା କବି ଉପେନ୍ଦ୍ର ଭଞ୍ଜ ତଥା ତାଙ୍କର ଅନୁକାରୀ କାବ୍ୟକର୍ତ୍ତାମାନଙ୍କର ଆଡ଼ମ୍ବରପୂର୍ଣ୍ଣ ବାଗ୍‌ବିଳାସ ପ୍ରତି ଅତ୍ୟଧିକ ମମତା । ଫଳତଃ ଏହି କାଳରେ ରସ ଉଦ୍‌ବୋଧନ କରିବାର ଶକ୍ତି ପରିବର୍ତ୍ତେ "ଶବଦ ସମୁଦ୍ର ପାର" ହୋଇଥିବା କବିକୁ ଅଧିକ ଗୌରବ ଦିଆଗଲା । ଶବ୍ଦର ଯାଦୁ ଖେଳକୁ କାବ୍ୟର ଚମତ୍କାରିତା କୁହାଗଲା । ତେଣୁ ଅର୍ଜୁନ ଦାସ, କାର୍ତ୍ତିକ ଦାସ, ନରସିଂହ ସେଣ ଆଦି କବିଙ୍କ ପକ୍ଷରେ "ସବୁଙ୍କର ବୁଝିବା ପାଇଁ ଦେଶ ଭଷାରେ ଗ୍ରନ୍ଥିତ ରଚନା" ଆଦର୍ଶ ଥିବାବେଳେ ଧନଞ୍ଜୟ-ଉପେନ୍ଦ୍ରାଦିଙ୍କ ଠାରୁ ଏହି ଉଦ୍ଦେଶ୍ୟ ବ୍ୟାହତ ହୋଇ କାବ୍ୟ ଚର୍ଚ୍ଚା କେବଳ "ଆର୍ଣ୍ଣୀ ଜନପ୍ରକର" ମଧ୍ୟରେ ସୀମିତ

ହୋଇଗଲା । ମାତ୍ର ଉପେନ୍ଦ୍ରଙ୍କ ସମକାଳର ରଚନା 'ହାରାବତୀ'ର ଭାଷାରେ ପୁଣି 'ନରସିଂହ ସେଣା'ଙ୍କର ଆଦର୍ଶ ଅନୁସରଣର ସଙ୍କେତ ମିଳେ । ଏହା "ସବୁଙ୍କର ବୁଝିବା" ଭଳି ଭାଷାରେ ରଚିତ । ଅନୁପ୍ରାସାଦି ସରଳ ଶ୍ରୁତି-ସୁଖକର ଶବ୍ଦାଳଙ୍କାର ବ୍ୟତୀତ ଅନ୍ୟ ଶବ୍ଦାଳଙ୍କାରର ପ୍ରୟୋଗ ଏଥିରେ ନାହିଁ, ଗଣ ଜୀବନର ଚିତ୍ର ପ୍ରଦାନ କରିଥିବା ଏହି କାବ୍ୟଟିରେ ସାଧାରଣ ଲୋକ ପ୍ରଚଳିତ ଭାଷାର ବ୍ୟବହାର ଏହାର ଅନ୍ୟତମ ବୈଶିଷ୍ଟ୍ୟ ।

ରାମଚନ୍ଦ୍ରଙ୍କର ଅନ୍ୟ ଏକ ରଚନା ହେଉଛି 'ଅନୁରାଗବତୀ', ବଣିକ ଯୁବକ ରତ୍ନଧ୍ୱଜ ଓ ଏକ ସାଧାରଣ ପରିବାରର କନ୍ୟା ଅନୁରାଗବତୀର ପ୍ରଣୟ କାହାଣୀ ଏହାର ଆଧାର । ଯୁବକ ରତ୍ନଧ୍ୱଜ ଅନୁରାଗବତୀ ସହ ଗୁପ୍ତ ପ୍ରଣୟ ସ୍ଥାପନ କରିବାର ପରିଣାମ ସ୍ୱରୂପ ତାହାର ଶିରଚ୍ଛେଦ ହୁଏ । ବନଦେବୀଙ୍କର ଆଶୀର୍ବାଦରେ ସେ ପୁନର୍ଜୀବନ ଲାଭ କରି ନାୟିକା ସହ ଗମନ କରେ ଦେଶାନ୍ତର । ଶୈଳରାଜ ତାହାଠାରୁ ଅନୁରାଗବତୀକୁ ଅପହରଣ କରି ନିଅନ୍ତି ଓ ବ୍ରତ ପାଳନର ଛଳନା କରି ଅନୁରାଗବତୀ ରାଜାଙ୍କ ଲୋଲୁପ ଦୃଷ୍ଟିରୁ ନିଜକୁ ରକ୍ଷା କରେ । ମାଲ୍ୟାଣି ସାହାଯ୍ୟରେ ରତ୍ନଧ୍ୱଜ ଅନୁରାଗବତୀ ସହ ସମ୍ପର୍କ ସ୍ଥାପନ କରି ତାହାର ଉଦ୍ଧାର ନିମିତ୍ତ ସୁଯୋଗ ଅପେକ୍ଷାରେ ରହେ । ଦୋଳ ପୂର୍ଣ୍ଣିମା ଦିନ ରାଣୀମାନଙ୍କ ଗହଣରେ ଅନୁରାଗବତୀ ଦୋଳୋତ୍ସବ ଦେଖୁଥିବା ସମୟରେ ଅପ୍ରତ୍ୟାଶିତ ଭାବରେ ସୈନ୍ୟମାନେ ବିଦ୍ରୋହ କରନ୍ତି । ଏହି ସୁଯୋଗରେ ରତ୍ନଧ୍ୱଜ ଅନୁରାଗବତୀକୁ ଉଦ୍ଧାର କରି ସ୍ୱଦେଶ ପ୍ରତ୍ୟାବର୍ତ୍ତନ କରେ । ମୃତ ରତ୍ନଧ୍ୱଜକୁ ଦେଖି ତା'ର ଆତ୍ମୀୟ ସ୍ୱଜନମାନେ ଭୀତତ୍ରସ୍ତ ହୋଇ ପଡ଼ିଥିବା ବେଳେ ସେ ଦେଶର ରାଜା ଏ ସମ୍ବାଦ ପାଇ ଉଭୟଙ୍କର ବିବାହ ସମ୍ପନ୍ନ କରାଇ ଦେଇଛନ୍ତି ।

ଏହି କାବ୍ୟଟିରେ କବି ସାଧାରଣ ପରିବାରରୁ ନାୟିକା ନିର୍ବାଚନ କରିଥିଲେ ମଧ୍ୟ କଥାବସ୍ତୁ ପରିକଳ୍ପନାରେ କୌଣସି ବିଶେଷତ୍ୱ ପ୍ରଦର୍ଶନ କରି ନାହାନ୍ତି । ଏହା ଗତାନୁଗତିକ ଢାଞ୍ଚାର । ବନଦେବୀଙ୍କର ଆଶୀର୍ବାଦରେ ନାୟକର ପୁନର୍ଜୀବନ ଲାଭ ପ୍ରସଙ୍ଗର ପରିକଳ୍ପନା ଅନ୍ୟାନ୍ୟ କାଳ୍ପନିକ କାବ୍ୟମାନଙ୍କରେ ପରିଦୃଷ୍ଟ ଅତିମାନବୀୟ ଘଟଣାବଳୀର ପ୍ରତିସ୍ୱର ମାତ୍ର ।

'ହାଗବତୀ' କାବ୍ୟର ପରିବର୍ତ୍ତନର ସ୍ୱର ଶୁଣାଇଥିବା କବି ରାମଚନ୍ଦ୍ରଙ୍କର ଗତାନୁଗତିକତା ପ୍ରତି ଏହି ଆକର୍ଷଣର କାରଣ କଣ ବୁଝିହୁଏନାହିଁ ।

ବୈଶିଷ୍ଟ୍ୟ କାରଣରୁ 'ହାଗବତୀ' କାବ୍ୟଟି ବହୁବର୍ଷ ପୂର୍ବେ ମୋର ପୂଜ୍ୟଗୁରୁ ଡକ୍ଟର କୃଷ୍ଣଚରଣ ବେହେରଙ୍କର ଦୃଷ୍ଟି ଆକର୍ଷଣ କରିଥିଲା । ସେହି କାଳରୁ ସେ ଏହି କାବ୍ୟଟିକୁ ପୋଥି ଭଣ୍ଡାରରୁ ଲୋକଲୋଚନକୁ ଆଣିବା ପାଇଁ ବହୁବାର ଉଦ୍ୟମ କରିଆସିଥିଲେ ମଧ୍ୟ ଉପଲବ୍ଧ ପାଣ୍ଡୁଲିପିଗୁଡ଼ିକର ଜୀର୍ଣ୍ଣ-ଶୀର୍ଣ୍ଣ ଅବସ୍ଥା ଓ ଅନ୍ୟ କେତେକ ଅସୁବିଧା କାରଣରୁ ଅସମର୍ଥ ହୋଇଥିଲେ । ଏହା ପରେ ପଣ୍ଡିତ ନୀଳମଣି ମିଶ୍ରଙ୍କର ସଂପାଦନାରେ କାବ୍ୟଟିର ନିର୍ବାଚିତ ଅଂଶ 'ଏଷଣା'ର ଦ୍ୱାଦଶ ଖଣ୍ଡରେ (ଜୁନ୍ ୧୯୮୬) ପ୍ରକାଶ ପାଇଲା । ମାତ୍ର ଏତିକିରେ ଡଃ ବେହେରଙ୍କର ମନ ସନ୍ତୁଷ୍ଟ ହେଲା ନାହିଁ । ସଂପୂର୍ଣ୍ଣ କାବ୍ୟଟିର ଶୁଦ୍ଧ ସଂପାଦିତ ରୂପ ପ୍ରସ୍ତୁତି ପାଇଁ ସେ ମୋତେ ଅନୁପ୍ରେରିତ କଲେ । ପ୍ରସ୍ତୁତ ସଂପାଦନାଟି ସେହି ଅନୁପ୍ରେରଣାର ଫଳ ।

ଏହି ସଂପାଦନା ପାଇଁ ଯେଉଁ ଚାରିଗୋଟି ପାଣ୍ଡୁଲିପିର ସହାୟତା ନିଆଯାଇଛି, ସେଗୁଡ଼ିକ ଓଡ଼ିଶା ରାଜ୍ୟ ଜୟଦେବ ସଂଗ୍ରହାଳୟର (ପୋଥିବିଭାଗ) ସୌଜନ୍ୟରୁ ପ୍ରାପ୍ତ । ଏଥି ମଧ୍ୟରୁ ଦୁଇଟି ପ୍ରତିଲିପି ପ୍ରାମାଣିକ କାଗଜ ନକଲ ଓ ଅନ୍ୟ ଦୁଇଟି ମୌଳିକ ତାଳପତ୍ର ପୋଥି । କାଗଜ ନକଲ ଦ୍ୱୟ ମଧ୍ୟରୁ ଗୋଟିକର ('କ' : CY/362) ମୂଳ ତାଳପତ୍ର ପୋଥି (OL/512) ଏବେ ବି ସଂରକ୍ଷିତ ହୋଇ ରହିଥିବା ବେଳେ ଅନ୍ୟଟିର ('ଖ' ପୋଥି : CY/6) ସଂଗ୍ରହ ସ୍ଥଳ ବା ମୂଳ ତାଳପତ୍ର ପୋଥି ସଂପର୍କରେ କୌଣସି ସୂଚନା ମିଳେ ନାହିଁ । ତତ୍‌ପରେ ଏହି ପୋଥିଟିର ପାଠ ମଧ୍ୟ 'କ' ପୋଥିଟି ସହ ପ୍ରାୟ ସମାନ । ସୁତରାଂ ଗ୍ରନ୍ଥ ସଂପାଦନା ପାଇଁ କେବଳ ଏହା ଉପରେ ସଂପୂର୍ଣ୍ଣ ନିର୍ଭର କରିବା ଅବୈଜ୍ଞାନିକ ମନେ ହେଲା ।

ତାଳପତ୍ର ପୋଥିଗୁଡ଼ିକର ଅବସ୍ଥା ନିତାନ୍ତ ନୈରାଶ୍ୟଜନକ । ବିଶେଷତଃ 'ଘ' ପୋଥିଟିର ସମସ୍ତ ପତ୍ରର ଅର୍ଦ୍ଧେକ ଅଂଶ ଉଇ ଖାଇଯାଇଥିବା ବେଳେ ଅନ୍ୟ ଅର୍ଦ୍ଧେକ କୀଟରନ୍ଧ୍ର ଫଳରେ ଚାଲୁଣୀ ଭଳି ହୋଇଯାଇଛି । ପୁଣି କେତେକ ପତ୍ର ପରସ୍ପର ପରସ୍ପର ସହ ଲାଗିଯାଇଛି । ତେଣୁ ସଂପୂର୍ଣ୍ଣ

ପାଠୋଦ୍ଧାର ସଂଭବ ହୋଇ ପାରି ନ ଥିଲା । 'ଘ' ପୋଥିଟି ମଧ୍ୟ ଅତ୍ୟନ୍ତ ଜୀର୍ଣ୍ଣଶୀର୍ଣ୍ଣ । ଏହାର ପତ୍ରଗୁଡ଼ିକ ପତ୍ରାଙ୍କ ଅନୁସାରେ ସଯତ୍ନ ସଂକଳିତ ହୋଇ ରହି ନ ଥିଲା । ମାତ୍ର ସୌଭାଗ୍ୟର ବିଷୟ ଯେ ଏହାର ସମସ୍ତ ପତ୍ର ମିଳିଗଲା ଓ ପାଠାଂଶ ବିଶେଷ କ୍ଷତିଗ୍ରସ୍ତ ହୋଇ ନ ଥିବାରୁ ଶୁଦ୍ଧ ସଂପାଦନା ପାଇଁ ଗୁରୁତ୍ୱପୂର୍ଣ୍ଣ ସ୍ଥାନ ଅଧିକାର କରିଥିଲା । ତେଣୁ ପ୍ରସ୍ତୁତ ସଂପାଦନାରେ ପ୍ରଦତ୍ତ 'ଘ' ପୋଥିର ପାଠାନ୍ତର ସ୍ୱୟଂ ସଂପୂର୍ଣ୍ଣ ହୋଇଥିବା ବେଳେ 'ଗ' ପୋଥିର ଯେତିକି ଅଂଶର ପାଠୋଦ୍ଧାର ହୋଇଛି, ଆପାତତଃ ନିର୍ଭୁଲ ସଂପାଦନା ନିମିତ୍ତ ସେତିକିର ପାଠାନ୍ତର ପ୍ରଦତ୍ତ ହୋଇଛି ।

ଉପଲବ୍ଧ ଚାରିଗୋଟିଯାକ ପ୍ରତିଲିପି ମଧ୍ୟରୁ 'କ' ପୋଥିଟିର ପାଠାଂଶ ଅକ୍ଷୁଣ୍ଣ ଥିବାରୁ ଓ 'ଖ' ପୋଥିଟି ତୁଳନାରେ ଅଧିକ ବିଶ୍ୱାସଯୋଗ୍ୟ ହୋଇଥିବାରୁ ଏହାକୁ ପ୍ରସ୍ତୁତ ସଂପାଦନାରେ ମୂଳ ପୋଥି ରୂପେ ଗ୍ରହଣ କରାଯାଇଛି, କିନ୍ତୁ 'କ' ପୋଥିର ଯେଉଁ ଅଂଶଗୁଡ଼ିକ ନିରର୍ଥକ ବା ଅସଂପୂର୍ଣ୍ଣ (ପଦ ନଥିବା କାରଣରୁ) ମନେ ହୋଇଛି, ସେଠାରେ ତାହା ପରିବର୍ତ୍ତେ ଅନ୍ୟ ପୋଥିର ପାଠକୁ ଗ୍ରହଣ କରାଯାଇ ଏହି ପୋଥିର ପାଠାନ୍ତର ପ୍ରଦାନ କରାଯାଇଛି । ସହାୟକ ପୋଥିଗୁଡ଼ିକରେ 'ଅ'='ୟ', 'ଆ'='ୟା', 'ଏ'='ୟେ' ଆଦିର ବ୍ୟବହାରରେ କୌଣସି ନିୟମ ରକ୍ଷା କରାଯାଇ ନ ଥିବା ଦେଖାଯାଏ । ସେହି ଅନିୟମିତତାକୁ ଏହି ସଂପାଦନାରେ ସୁରକ୍ଷିତ ରଖାଯାଇ 'ଏମନ୍ତେ'='ୟେମନ୍ତେ', 'ପ୍ରିଆ'='ପ୍ରିୟା', 'ୟେହା'='ଏହା', 'ୟେଥୁ'='ଏଥୁ' ଆଦି ଶବ୍ଦଗୁଡ଼ିକର ଉଭୟ ରୂପକୁ ଗ୍ରହଣ କରି ନିଆଯାଇଛି । କିନ୍ତୁ ତିନିଗୋଟିଯାକ 'ସ'ର ('ଶ', 'ଷ', 'ସ') ବ୍ୟବହାରରେ ଯଥେଚ୍ଛାଚାର ଥିଲେ ହେଁ ଅର୍ଥବୋଧ ନିମିତ୍ତ ଉପଯୁକ୍ତ ପ୍ରୟୋଗ ଗୃହୀତ ହୋଇଛି ।

ମୋର ଗବେଷଣା କାର୍ଯ୍ୟର ଅଂଶ-ବିଶେଷ ରୂପେ 'ଭାଗବତୀ' କାବ୍ୟର ଶୁଦ୍ଧ ସଂପାଦନା ପାଇଁ ଅନୁମତି ପ୍ରଦାନ କରିଥିବାରୁ ଓ ସଂପାଦନା ପାଇଁ ପାଣ୍ଡୁଲିପିଗୁଡ଼ିକ ଅକୁଣ୍ଠ ଚିତ୍ତରେ ବ୍ୟବହାର କରିବାକୁ ସୁଯୋଗ ଦେଇଥିବାରୁ ସଂଗ୍ରହାଳୟ କର୍ତ୍ତୃପକ୍ଷ, ବିଶେଷତଃ ପୋଥି ବିଭାଗର କ୍ୟୁରେଟର, ସୁଭାଷଚନ୍ଦ୍ର ଶ୍ରୀ ବିଶୋଇଙ୍କ ନିକଟରେ ମୁଁ କୃତଜ୍ଞ । ଏତଦ୍‌ଭିନ୍ନ ପାଣ୍ଡୁଲିପି ନକଲ

ଓ ସଂପାଦନା କାର୍ଯ୍ୟରେ ସାହାଯ୍ୟ କରିଥିବା ମୋର ସାନଭାଇ ରଶ୍ମୀରଞ୍ଜନ ଓ ପତ୍ନୀ ଉମାଙ୍କୁ ଏ ଅବସରରେ ମୁଁ ସାଧୁବାଦ ଜଣାଉଛି । ଏମାନଙ୍କ ବ୍ୟତୀତ ଆଉ ଜଣେ ବ୍ୟକ୍ତି–ଯିଏ କି ସର୍ବଦା ମୋତେ ସାରସ୍ୱତ କାର୍ଯ୍ୟପାଇଁ ଉତ୍ସାହିତ କରି ଆସିଛନ୍ତି ଓ ଏହି ଗ୍ରନ୍ଥ-ସଂପାଦନାରେ ମଧ୍ୟ ଅନୁରୂପ ଭୂମିକା ଗ୍ରହଣ କରିଛନ୍ତି, ସେହି ସୁଧୀର ଭାଇଙ୍କୁ (ଶ୍ରୀ ସୁଧୀର ଚନ୍ଦ୍ର ବେହୁରା) ଧନ୍ୟବାଦ ଜଣାଉଛି ।

ଶ୍ରୀ ଜଟାଧାରୀ ମହାପାତ୍ର
ଗେଡ଼ିଆପଲ୍ଲୀ, ବାଘମାରୀ, ପୁରୀ

## ଆକର ଓ ସହାୟକ ରଚନାବଳୀ

୧ । 'କ' ପୋଥି—Cy/362 (ପ୍ରାମାଣିକ କାଗଜ ପ୍ରତିଲିପି)

ମୂଳ ତାଳପତ୍ର ପୋଥି : OL/512 (ଏହାର ୧୪୮ ପତ୍ରରୁ ୧୭୫ପତ୍ର ପର୍ଯ୍ୟନ୍ତ 'ହାରାବତୀ' କାବ୍ୟ ରହିଛି । 'ହାରାବତୀ' ବ୍ୟତୀତ 'ରହସ୍ୟ ମଞ୍ଜରୀ'—ଦେବଦୁର୍ଲଭ ଦାସ, ଶୋଭାବତୀ'—ପୁରୁଷୋତ୍ତମ ମାନଧାତା ନୃପ, ଆଦି କାବ୍ୟ ରହିଛି ।)

ତାଳପତ୍ର ପୋଥିର ଆକାର—୩୫.୫ ସେ:ମି:× ୦ ସେ:ମି:×୩ ସେ:ମି:; ଅବସ୍ଥା—କୀଟଦ୍ରୁଷ୍ଟ; ପୁଷ୍ପିକା–ନାହିଁ; ପ୍ରାପ୍ତିସ୍ଥାନ–ହଳଦିଆ ଗଡ଼, ପୁରୀ; ପ୍ରାପ୍ତିକାଳ–ମାର୍ଚ୍ଚ ୧୯୫୮, 'ଓଡ଼ିଶା ରାଜ୍ୟ ଜୟଦେବ ସଂଗ୍ରହାଳୟର ପୋଥି ଭଣ୍ଡାରରେ ସଂରକ୍ଷିତ) ।

'ଖ' ପୋଥି—Cy/6 (ଓଡ଼ିଶା ରାଜ୍ୟ ଜୟଦେବ ସଂଗ୍ରହାଳୟର ପ୍ରାମାଣିକ କାଗଜ ପ୍ରତିଲିପି । କେଉଁ ପୋଥିର ନକଲ ବା କେଉଁଠାରୁ ସଂଗୃହୀତ ହୋଇଛି, ତାହାର କୌଣସି ସୂଚନା ମିଳୁନାହିଁ) ।

'ଗ' ପୋଥି—OL/612 (ତାଳପତ୍ର ପୋଥି) ।

ଅବସ୍ଥା—କୀଟଦ୍ରୁଷ୍ଟ (ବହୁ ଅଂଶ ନଷ୍ଟ ହୋଇଯାଇଛି । କେତେକ ପତ୍ର ପରସ୍ପର ସହ ଲାଗିଯାଇଛି ।)

ଆକାର—୨୦ ସେ:ମି:×୩ ସେ:ମି:×୨.୫ସେ:ମି: ।

ମୋଟ ପତ୍ରସଂଖ୍ୟା—୩୩ ।

ପୁଷ୍ପିକା— "ଶ୍ରୀ ଶ୍ରୀ ରାମଚନ୍ଦ୍ର ମହାରାଜଙ୍କ ବିଜୟ ଶୁଭରାଜ୍ୟ ସମସ୍ତ ତେୟାଳିଶି ଅଙ୍କ ଶାହି ××× ହିନ୍ଦୋଳ ଗଡ଼ ରହଣି ରଘୁଡ଼ି ସାହିରେ ଏ ପୁସ୍ତକ ଲେଖା ବଢ଼ିଲ । ଜ୍ୟେଷ୍ଠ ମାସ କୃଷ୍ଣପକ୍ଷ ଅଷ୍ଟମୀ ଦିନ ବେଳ ଦୁଇ ପହରଠାରେ ।"

ପ୍ରାପ୍ତିସ୍ଥାନ—ମଧୁପୁର ଗଡ଼, କଟକ ।

ପ୍ରାପ୍ତିକାଳ—ଖ୍ରୀ:ଅ:–୧୯୬୦ ।

(ରାଜ୍ୟ ଜୟଦେବ ସଂଗ୍ରହାଳୟର ପୋଥି ଭଣ୍ଡାରରେ ସଂରକ୍ଷିତ)

'ଘ' ପୋଥି—OL/39 (ତାଳପତ୍ର ପୋଥି)

ଅବସ୍ଥା—କୀଟଦଷ୍ଟ, ପୁଷ୍ପିକା ନାହିଁ ।

ପତ୍ରସଂଖ୍ୟା—୧୫୦ରୁ ଊର୍ଦ୍ଧ୍ୱ (ପତ୍ରଗୁଡ଼ିକ ପୃଷ୍ଠାଙ୍କ ଅନୁଯାୟୀ ସଂକଳିତ ହୋଇ ରହି ନାହିଁ ।

ଆକାର—୩.୭ ସେ:ମି: × ୮.୫ ସେ:ମି: × ୩ ସେ:ମି. ।

ଏହି ପୋଥିରେ ୨୬ଟି ପତ୍ରରେ (ପୃଷ୍ଠାଙ୍କ ନଷ୍ଟ ହୋଇଯାଇଛି) 'ଭାଗବତ' କାବ୍ୟଟି ଅଛି । ଏହା ବ୍ୟତୀତ ଉପେନ୍ଦ୍ର ଭଞ୍ଜଙ୍କ 'ରସିକ ହାରାବଳୀ' ଓ 'ରସ ପଞ୍ଚକ' ମଧ୍ୟ ରହିଛି । 'ଭାଗବତ'ର ୧୦ମ ଛାନ୍ଦ ୩୦ ପଦ ପର୍ଯ୍ୟନ୍ତ ପାଠ ଏଥିରେ ଅଛି । ଶେଷାଂଶ ଓ ୬ଷ୍ଠ/୧୧ ପଦ/୨ୟ ପାଦରୁ-୨୦ ପଦ, ୭ମ / ୪୨ ପଦରୁ–୭ମ / ୫୨ ପଦ, ୮ମ/୧୬ ପଦରୁ–୯ମ/୭ ପଦର ପାଠ ନଷ୍ଟ ହୋଇଯାଇଛି ।

ପୋଥି ପ୍ରାପ୍ତିସ୍ଥାନ—S. N. Das, ପୁରୀ

ପ୍ରାପ୍ତିକାଳ—ଖ୍ରୀ:ଅ:–୧୯୫୨

(ଓଡ଼ିଶା ରାଜ୍ୟ ଜୟଦେବ ସଂଗ୍ରହାଳୟର ପୋଥିଭଣ୍ଡାରରେ ସଂରକ୍ଷିତ)

୨ । ଏଷଣା ପ୍ରବନ୍ଧାବଳୀ : ଛଅ (୬), ସମ୍ପାଦକ–ଡଃ କୃଷ୍ଣଚରଣ ବେହେରା ପ୍ରମୁଖ, ପ୍ରକାଶକ–ଓଡ଼ିଆ ଗବେଷଣା ପରିଷଦ, ଶ୍ରୀ ଅରବିନ୍ଦ ନଗର, କଟକ-୧୦—୧୯୮୬

୩ । ଶୃଙ୍ଗାର ତତ୍ତ୍ୱ ଓ ଓଡ଼ିଆ ରୀତି କାବ୍ୟ–ଡଃ: ବନମାଳୀ ବାରିକ, ପ୍ରକାଶକ–ମୟୂର ପବ୍ଲିକେସନସ୍, ଖାରବେଳ ନଗର, ଭୁବନେଶ୍ୱର-୧, (୧୯୯୨)

□ □ □

'ହାରାବଳୀ' ମଧ୍ୟଯୁଗୀୟ ଓଡ଼ିଆ କାବ୍ୟଧାରାର ଏକ ପୃଥକ୍ ସୃଷ୍ଟି—ରୂପରେ ଭିନ୍ନ, ଗୁଣରେ ନିଆରା ଏବଂ ସ୍ୱାଦରେ ସ୍ୱତନ୍ତ୍ର—ସମାଜରେ ଲୌକିକ ପାରଦାରିକ ସମ୍ପର୍କର ଏକ ଆକର୍ଷକ ଆଲେଖ୍ୟ । ଖ୍ରୀଷ୍ଟୀୟ ୧୮ଶ ଶତାବ୍ଦୀର କବି ରାମଚନ୍ଦ୍ର ପଟ୍ଟନାୟକ ବିରଚିତ ଅଦ୍ୟାବଧି ଅପ୍ରକାଶିତ ଏହି କାବ୍ୟଟି ଆତ୍ମିକ ଓ ଆଙ୍ଗିକ ବୈଶିଷ୍ଟ୍ୟରେ ପାଠକସମାଜକୁ ବିସ୍ମୟ-ମୁଗ୍ଧ କରିବ ଏବଂ ଐତିହ୍ୟସ୍ଥାପିତ ପ୍ରଥାବଦ୍ଧ-ସାମାଜିକବର୍ଗଙ୍କୁ କରିବ ଆଲୋଡ଼ିତ ।

ଗ୍ରନ୍ଥ-ସମ୍ପାଦକ ଶ୍ରୀ ଜଟାଧାରୀ ମହାପାତ୍ର (୧୯୭୪) ଓଡ଼ିଆ ଭାଷା-ସାହିତ୍ୟରେ ସ୍ନାତକୋତ୍ତର ଶିକ୍ଷାଲାଭ ପରେ ସଂପ୍ରତି ଗବେଷଣାରତ ।